# ଅମ୍ବେଦକାର

ସୁରେନ୍ଦ୍ର ମହାନ୍ତି



କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍, କଟକ

# ଅମ୍ବେଦକର

ଲେଖକ :

ସୁରେନ୍ଦ୍ର ମହାନ୍ତି



କଟକ-ଷ୍ଟୁଡେଣ୍ଟସ୍ ଷ୍ଟୋର

# ଅମ୍ବେଦକର

ସୁରେନ୍ଦ୍ର ମହାନ୍ତି

ପ୍ରକାଶିକା :
ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୨

ପ୍ରକାଶନ ଉପଦେଷ୍ଟା :
ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ମୁଦ୍ରଣ :
ପଦ୍ମାଳୟା ପ୍ରକାଶନୀ
ଶଙ୍କରପୁର, କଟକ-୧୨

ପ୍ରଥମ ସଂସ୍କରଣ : ୧୯୯୦

ମୂଲ୍ୟ : ପାଞ୍ଚ ଟଙ୍କା

## ସୂଚୀପତ୍ର

# ଆମ୍ବେଦକରଙ୍କ ଶୈଶବ

ମହାରାଷ୍ଟ୍ରର ଦାପୋଲୀ ଗାଁର ଗୋଟିଏ ମରଠୀ ପ୍ରାଥମିକ ସ୍କୁଲ, ଶ୍ରେଣୀଗୃହ ଭିତରେ ପିଲାମାନେ ନିଜ ନିଜ ସ୍ଥାନରେ ବସି ପାଠ ପଢ଼ୁଛନ୍ତି । ଶିକ୍ଷକ ବଡ଼ ପାଟିରେ ସେମାନଙ୍କୁ ପାଠ ପଢ଼ାଉଛନ୍ତି । କିନ୍ତୁ ଶ୍ରେଣୀଗୃହ ପିଣ୍ଡାରେ ପାଞ୍ଚ ବର୍ଷର ପିଲାଟିଏ ବସି ଶିକ୍ଷକଙ୍କ ପାଠ ପଢ଼େଇବା ଶୁଣୁଛି ଓ ଖଣ୍ଡେ ସିଲଟରେ ଅକ୍ଷର ଲେଖା ଅଭ୍ୟାସ କରୁଛି ।

ପିଲାଟି ଅଛୁତ । ସେଥିପାଇଁ ଅନ୍ୟ ସବର୍ଣ୍ଣ ଜାତିର ପିଲାମାନଙ୍କ ସାଙ୍ଗରେ ସ୍କୁଲ ଶ୍ରେଣୀଗୃହରେ ଏକାଠି ବସି ପଢ଼ିବା ତା' ପାଇଁ ମନା । ସେମାନଙ୍କ ସାଙ୍ଗରେ ସେ ବସିଲେ କୁଆଡ଼େ ଅନ୍ୟ ସବର୍ଣ୍ଣ ଜାତି ପିଲାମାନଙ୍କର ଜାତି ମାରି ହୋଇଯିବ । ପିଲାଟି ସବୁ ବୁଝି ପାରୁଛି । ସେ ମଧ୍ୟ ବୁଝି ପାରୁଛି, ଏହା ତା' ପ୍ରତି ଏକ ଲାଞ୍ଛନା । କିନ୍ତୁ କେଉଁଥିପାଇଁ ଏ ଲାଞ୍ଛନା, ତାହାର କାରଣ ସେ ବୁଝିପାରୁ ନାହିଁ । ବେଳେ ବେଳେ ତା' ଟିକି ମନ ଭିତରେ ବିଦ୍ରୋହର ଗୋଟାଏ ଭାବନା ମୁଣ୍ଡଟେକି ଉଠୁଚି । ମାତ୍ର ପର ମୁହୂର୍ତ୍ତରେ ତା' ପୁଣି ମଉଳି ଯାଉଚି । ସେ କେବଳ ଏତିକି ବୁଝୁଚି, ସିଏ ଅଛୁତ ଘରର ପିଲା । ସେଥିପାଇଁ ତା' ପ୍ରତି ଏଇ ବାଛନ୍ଦ । କିନ୍ତୁ ଅଛୁତ ହୋଇ ଜନ୍ମ ହେବା, କ'ଣ ଏକ ପାପ ?

ଏଇ ପିଲାଟିର ନାମ ହେଉଛି, ଭୀମରାଓ ରାମ୍‌ଜୀ ଅମ୍ବେଦକର ।

ସମାଜରୁ ଛୁଆଁ ଛୁତ ଲୋପକରି, ନୂଆ ସମାଜ ଓ ନୂଆ ମଣିଷ ଗଢ଼ିବା ଥିଲା, ତାଙ୍କ ଜୀବନର ସଂଗ୍ରାମ ଓ ସାଧନା ।

ମଧ୍ୟ-ଭାରତର ମାଓ ଗ୍ରାମରେ ୧୮୯୧ ମସିହା ଅପ୍ରେଲ ୧୪ ତାରିଖ ଦିନ, ଭୀମରାଓ ରାମଜୀ ଅମ୍ବେଦକର ମାହାର ନାମକ ଏକ ଅଛୁତ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ବାପା ରାମ୍‌ଜୀ ଜଣେ ଭଲ ଖେଳାଳୀ ଥିଲେ ଓ ସେ ମଧ୍ୟ କିଛି କିଛି ଇଂରାଜୀ ଜାଣିଥିଲେ । ମାହାର ମାନେ ଅଛୁତ ହେଲେ ହେଁ ଏକ ସାମରିକ ଜାତିରୂପେ ବିବେଚିତ ହେଉଥିଲେ । ରାମ୍‌ଜୀ ପ୍ରଥମେ ସୈନ୍ୟ ବାହିନୀରେ ଯୋଗଦେଇ ଗୋଟିଏ ସାମରିକ ସ୍କୁଲରେ ପ୍ରଧାନ ଶିକ୍ଷକର ପାହ୍ୟା ପର୍ଯ୍ୟନ୍ତ ଉଠିଥିଲେ । ୧୮୯୧ ମସିହାରେ ମାସିକ ୫° ଟଙ୍କା ପେନସନ ପାଇ ରତ୍ନଗିରି ଜିଲ୍ଲାର ଦାପୋଲୀ ଗ୍ରାମରେ ସେ ବସବାସ କରିବା ଆରମ୍ଭ କଲେ । ଏହି ସମୟରେ ଭୀମ୍‌ରାଓଙ୍କର ଜନ୍ମ ହୁଏ । ୧୮୯୪ ମସିହାରେ ରାମ୍‌ଜୀ ରତ୍ନଗିରି ଜିଲ୍ଲାର ପୂର୍ତ୍ତ ବିଭାଗରେ ଜଣେ ଭଣ୍ଡାର ରକ୍ଷକ ରୂପେ ନିଯୁକ୍ତ ପାଆନ୍ତି ଓ ପରେ ସେଠାରୁ ବଦଳି ହୋଇ ସତାରା ଚାଲି ଆସନ୍ତି !

ରାମ୍‌ଜୀଙ୍କର ଚଉଦ ଗୋଟି ସନ୍ତାନ ଥିଲେ । ଭୀମ୍‌ରାଓ ଥିଲେ ସେମାନଙ୍କ ମଧ୍ୟରେ ସର୍ବ କନିଷ୍ଠ ।

ଭୀମରାଓଙ୍କ ଜନନୀ ଧୀମାବାଈ ୧୮୯୬ ମସିହାରେ ଇହଲୀଳା ସମ୍ବରଣ କରିଥିଲେ । ସେତେବେଳକୁ ଭୀମ୍‌ରାଓଙ୍କ ବୟସ ମାତ୍ର ପାଞ୍ଚ । ତା'ପରେ ତାଙ୍କର ମାଉସୀ ମୀରାବାଈ ତାଙ୍କୁ ନିଜର ସନ୍ତାନ ପରି ଲାଳନ ପାଳନ କରିଥିଲେ ।

ଭୀମ୍‌ରାଓଙ୍କ ପିତା ରାମ୍‌ଜୀ ସତାରାକୁ ଆସିବା ପରେ ୧୯୦୦ ଖ୍ରୀଷ୍ଟାବ୍ଦରେ ସତାରା ସରକାରୀ ହାଇସ୍କୁଲରେ ପ୍ରଥମ ଶ୍ରେଣୀରେ ରାମ୍‌ଜୀ, ଭୀମ୍‌ରାଓଙ୍କ ନାମ ଲେଖାଇ ଦେଲେ । ସେତେ-

ସେବେଳେ ସ୍କୁଲରେ ତାଙ୍କର ନାମଥିଲା ଭିମ୍ବା ରାମ୍‌ଜୀ ଅମ୍ବେଦକର । ଭୀମ୍‌ରାଓଙ୍କ ମାଉସୀ ମୀରାବାଈ ତାଙ୍କୁ ଭିମ୍ବା ନାମରେ ଡାକୁଥିବାରୁ, ସେହି ଅନୁସାରେ ସ୍କୁଲରେ ପ୍ରବେଶିକାବେଳେ ଭିମ୍ବା ରାମ୍‌ଜୀ ଅମ୍ବେଦକରଙ୍କ ନାମରେ ତାଙ୍କର ନାମ ଲେଖା ଯାଇଥିଲା । ଭୀମ୍‌ରାଓଙ୍କର ସାଙ୍ଗିଆ ତାଙ୍କ ପୂର୍ବ ପୁରୁଷଙ୍କ ଗ୍ରାମର ନାମ ଅନୁସାରେ ଅମ୍ବାବାଡେକର ଥିଲା । ରତ୍ନଗିରି ଜିଲ୍ଲାର ଖେଦ ତାଲୁକାରେ ଅମ୍ବାବାଡେ ହେଉଛି, ଗୋଟିଏ ଗ୍ରାମର ନାମ । ଏହି ଗ୍ରାମର ନାମକୁ ତାଙ୍କର ପୂର୍ବ ପୁରୁଷମାନେ ସେମାନଙ୍କର ସାଙ୍ଗିଆ ରୂପେ ବ୍ୟବହାର କରୁଥିଲେ । କିନ୍ତୁ ଭୀମ୍‌ରାଓ ତାଙ୍କର ସାଙ୍ଗିଆକୁ ବଦଳାଇ ଅମ୍ବେଦକର କରିଦେଲେ । ଏହାର ମୂଳରେ ଥିଲା, ଜଣେ ଛାତ୍ରର ତା'ର ଶିକ୍ଷକଙ୍କ ପ୍ରତି ଶ୍ରଦ୍ଧା ଓ କୃତଜ୍ଞତା । ସତାରା ହାଇସ୍କୁଲରେ ଅମ୍ବେଦକର ନାମରେ ଜଣେ ଶିକ୍ଷକ ଥିଲେ । ଭୀମରାଓଙ୍କୁ ସେ ଖୁବ୍ ଶ୍ରଦ୍ଧା କରୁଥିଲେ ଓ ତାଙ୍କର ଭଲ ମନ୍ଦ ବୁଝୁଥିଲେ । ସେଥିପାଇଁ ଏହି ହୃଦୟବାନ ଶିକ୍ଷକଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତିର ନିଦର୍ଶନ ରୂପେ ଭୀମରାଓ ନିଜର ସାଙ୍ଗିଆ ଅମ୍ବାବାଡେ ପରିବର୍ତ୍ତେ ତାହାକୁ ଅମ୍ବେଦକର କରି ଦେଇଥିଲେ ।

ସତାରା ହାଇସ୍କୁଲ ଏକ ସରକାରୀ ସ୍କୁଲ ଥିଲେ ସୁଦ୍ଧା ଅମ୍ବେଦକର ଜନ୍ମରେ ଅଛୁତ ଥିବାରୁ ସ୍କୁଲରେ ତାଙ୍କୁ ମଧ୍ୟ ଅଲଗା ବସିବାକୁ ପଡୁଥିଲା । ସେଥିପାଇଁ ସେ ତାଙ୍କର ଅନ୍ୟ ସହପାଠୀ ପିଲାମାନଙ୍କ ସହିତ ମିଶିପାରୁ ନ ଥିଲେ, କିମ୍ବା ସେମାନଙ୍କ ସହିତ ଖେଳିପାରୁ ନ ଥିଲେ । ସେତେବେଳେ ଅଛୁତମାନଙ୍କ ପକ୍ଷରେ ସଂସ୍କୃତ ଶିକ୍ଷା ନିଷିଦ୍ଧ ଥିଲା । ଅଛୁତମାନେ ସେତେ-ବେଳେ ବୋଧହୁଏ ମ୍ଲେଚ୍ଛ ରୂପେ ବିବେଚିତ ହେଉଥିବାରୁ, ସଂସ୍କୃତ ଭାଷା ଶିକ୍ଷା କରିବା ଅଧିକାରରୁ ବଞ୍ଚିତ ଥିଲେ । ସ୍କୁଲର ସଂସ୍କୃତ ଶିକ୍ଷକ ମଧ୍ୟ କୌଣସି ଅଛୁତ ଛାତ୍ରକୁ ସଂସ୍କୃତରେ

ଶିକ୍ଷାଦାନ କରୁନଥିଲେ । ସେଥିପାଇଁ ହାଇସ୍କୁଲରେ ଅମ୍ବେଦକର ବାଧ୍ୟ ହୋଇ ଫରାସୀକୁ ତାଙ୍କର ଦ୍ୱିତୀୟ ଭାଷା ରୂପେ ଶିକ୍ଷା କରିବା ପାଇଁ ବାଧ୍ୟ ହୋଇଥିଲେ । ପରବର୍ତ୍ତୀ କାଳରେ ଅମ୍ବେଦକର ଥରେ କହିଥିଲେ, ସଂସ୍କୃତ ଶିକ୍ଷା କରିବା ପାଇଁ ତାଙ୍କର ପ୍ରବଳ ଆଗ୍ରହ ଥିଲେ ହେଁ ତାଙ୍କର ଶିକ୍ଷକମାନଙ୍କର ସଂକୀର୍ଣ୍ଣ ଦୃଷ୍ଟିକୋଣ ଯୋଗୁଁ ତାହା ସମ୍ଭବ ହୋଇ ପାରିଲା ନାହିଁ । ସତାରା ହାଇସ୍କୁଲରେ ଅଛୁବ ଛାତ୍ରମାନଙ୍କର ପାଠ ଖାତାକୁ ଛୁଇଁଲେ ଛୁଆଁଛୁତ ଦୋଷ ଲାଗିବ ବୋଲି । ସେହି କାରଣରୁ ସେମାନେ ଅଛୁବ ଛାତ୍ରମାନଙ୍କର ଖାତାକୁ ସ୍ପର୍ଶ କରୁ-ନ ଥିଲେ । କେତେକ ଶିକ୍ଷକ ଏଇ ଛୁଆଁଛୁତ କୁସଂସ୍କାର ବଶବର୍ତ୍ତୀ ହୋଇ ସେମାନଙ୍କୁ ଶ୍ରେଣୀରେ ପାଠ ଦେବା କୌଣସି ପ୍ରଶ୍ନ ସୁଦ୍ଧା ପଚାରୁ ନ ଥିଲେ । ଏଇପରି ଗ୍ଲାନି ଓ ଲାଞ୍ଛନା ମଧ୍ୟରେ ଅତିବାହିତ ହୋଇଥିଲା ଅମ୍ବେଦକରଙ୍କ ପ୍ରଥମ ଛାତ୍ର ଜୀବନ ।

୧୯୦୪ ମସିହାରେ ସତାରାରେ ଅମ୍ବେଦକରଙ୍କ ବାପା ରାମଜୀଙ୍କର କାର୍ଯ୍ୟକାଳ ଶେଷ ହୋଇଗଲା । ତା'ପରେ ସେ ପରିବାର ନେଇ ବମ୍ବେ ଚାଲିଆସିଲେ । କିନ୍ତୁ ବମ୍ବେରେ ଗୋଟିଏ ଘର ନେଇ ଏତେବଡ଼ ପରିବାର ସହିତ ଚଳିବା ପାଇଁ ତାଙ୍କର ଆର୍ଥିକ ସଙ୍ଗତି ନ ଥିଲା । ସେଥିପାଇଁ ବମ୍ବେର ପାରେଲ୍ ଅଞ୍ଚଳରେ ତାଙ୍କୁ ଗୋଟିଏ ପୁରୁଣା ଏକ ବଖୁରିଆ ଘରେ ରହିବା ପାଇଁ ପଡ଼ିଥିଲା । ସେ ଘରେ ରହୁଥିଲା ପୁଣି ଗୋଟିଏ ଛେଳି ଏଇ ପରିବେଶରେ କ୍ରମେ ଉନ୍ମେଷିତ ହୋଇଥିଲା ଅମ୍ବେଦକରଙ୍କ ଜୀବନ ।

——

# ବମ୍ବେରେ ଅମ୍ବେଦକର

ଅମ୍ବେଦକର ବମ୍ବେ ଆସିଲାବେଳକୁ ଚତୁର୍ଥ ଶ୍ରେଣୀର ଛାତ୍ର । ପ୍ରଥମେ ସିଏ ପା଼ରଲ୍ ମରାଠା ହାଇସ୍କୁଲରେ ନାମ ଲେଖାଇଲେ । କିନ୍ତୁ ଏଇ ସ୍କୁଲରେ ଦରିଦ୍ର ଛାତ୍ରମାନଙ୍କ ପାଇଁ କୌଣସି ପ୍ରକାର ସାହାଯ୍ୟର ବ୍ୟବସ୍ଥା ନ ଥିବାରୁ, ସେ ଏଲ୍‌ଫିନ୍‌ଷ୍ଟୋନ୍ ସରକାରୀ ହାଇସ୍କୁଲରେ ନାମ ଲେଖାଇଲେ । ଅମ୍ବେଦକର ଅଚ୍ଛୁତ ଜାତିର ଥିବାରୁ ଏ ପର୍ଯ୍ୟନ୍ତ କୌଣସି ସ୍କୁଲରେ ସେ କ୍ରିକେଟ ଖେଳିପାରୁ ନ ଥିଲେ । କିନ୍ତୁ ବମ୍ବେ ଏଲ୍‌ଫିନ୍‌ଷ୍ଟୋନ୍ ହାଇସ୍କୁଲରେ ସେ ପ୍ରକାର କୌଣସି ପ୍ରତିବନ୍ଧକ ନ ଥିଲା । ଏଠାରେ ସେ ମନଇଚ୍ଛାରେ କ୍ରିକେଟ ଖେଳିପାରୁଥିଲେ । ଏଇ ସ୍କୁଲରେ ତାଙ୍କୁ ମଧ୍ୟାହ୍ନ ଭୋଜନ ମଧ୍ୟ ଦିଆ ଯାଉଥିଲା । ତା'ଛଡ଼ା ତାଙ୍କର ଯେଉଁ ଆତ୍ମୀୟ ସ୍ୱଜନମାନେ ଆଖପାଖର କଲକାରଖାନା ମାନଙ୍କରେ କାମ କରୁଥିଲେ, ସେମାନଙ୍କ ପାଇଁ ମଧ୍ୟ ସେମାନଙ୍କର କଲଣିଆ ନେବାରେ ତାଙ୍କର କିଛି ସମସ୍ୟା କଟୁଥିଲା । ଅମ୍ବେଦକରଙ୍କ ପଢ଼ିବା ପାଇଁ ଆରମ୍ଭରୁ ପ୍ରବଳ ଆଗ୍ରହ ଥିବାରୁ, ବମ୍ବେର ଗ୍ରେର୍ନୀ ରୋଡ଼ ଗାର୍ଡ଼ନସ୍ ଲାଇବ୍ରେରୀକୁ ପଢ଼ାଶୁଣା କରିବା ପାଇଁ ସେ ନିୟମିତ ଭାବରେ ଯାଉଥିଲେ ।

୧୯୦୭ ଖ୍ରୀଷ୍ଟାବ୍ଦରେ ଏଇପରି ଭାବରେ ଏଲଫିନ୍‌ଷ୍ଟୋନ୍ ହାଇସ୍କୁଲରୁ ସେ ମାଟ୍ରିକୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେତେବେଳେ ଅମ୍ବେଦକରଙ୍କ ପରି ଜଣେ ଦରିଦ୍ର ଅଚ୍ଛୁତ ଛାତ୍ର ମାଟ୍ରିକୁଲେସନ୍ ପାଶ୍ କରିବା କିଛି ଛୋଟିଆ କଥା ନ ଥିଲା ।

ଏଥିପାଇଁ ତାଙ୍କ ପରିବାରରେ ହର୍ଷ ଓ ଉଲ୍ଲାସର ଲହରୀ ଖେଳି ଯାଇଥିଲା । ପରିବାରରେ ଏହାକୁ ସେମାନେ ଏକ ଉତ୍ସବ ରୂପେ ପାଳନ କରିଥିଲେ । ଏହି ଉପଲକ୍ଷରେ ସତ୍ୟ ଶୋଧକ ଆନ୍ଦୋଳନର ଜଣେ ନେତା ଏସ.କେ.ବୋଲଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଏକ ସଭାରେ ଅମ୍ବେଦକରଙ୍କୁ ଉଚ୍ଛ୍ୱସିତ ଅଭିନନ୍ଦନ ଜ୍ଞାପନ କରାଯାଇଥିଲା । ଶିବାଜୀଙ୍କର ଜୀବନ ଚରିତର ଲେଖକ କୃଷ୍ଣରାଓ ଅର୍ଜୁନ କେଲୁସ୍କର ଅମ୍ବେଦକରଙ୍କୁ ଗୌତମ ବୁଦ୍ଧଙ୍କର ଜୀବନୀ ସମ୍ପର୍କରେ ଖଣ୍ଡେ ବହି ଏହି ଉପଲକ୍ଷରେ ଉପହାର ଦେଇଥିଲେ । ସେଇ ଦିନୁ ବୋଧହୁଏ ଅମ୍ବେଦକର ଗୌତମ ବୁଦ୍ଧଙ୍କର ଜୀବନୀ ଓ ତାଙ୍କର ମତବାଦ ପ୍ରତି ଆକୃଷ୍ଟ ହୋଇଥିଲେ । ଇତିମଧ୍ୟରେ ସେ ଏଲ୍‌ଫିନ୍‌ଷ୍ଟୋନ୍ ହାଇସ୍କୁଲରେ ପଞ୍ଚମ ଶ୍ରେଣୀର ଛାତ୍ର ଥିବାବେଳେ ମାତ୍ର ଚଉଦ ବର୍ଷ ବୟସରେ ବିବାହ କରି ସାରିଥିଲେ । ତାଙ୍କ ପତ୍ନୀଙ୍କର ନାମ ଥିଲା ରମାବାଇ, ବୟସ ମାତ୍ର ୯ !

ପ୍ରତିଭାକୁ ପରିସ୍ଥିତି କଦାପି ଦବାଇ ପାରେ ନାହିଁ । ସବୁ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ପ୍ରତିଭା ନିଜର ବିକାଶ ପାଇଁ ବାଟ-ଖୋଜେ । ଅମ୍ବେଦକରଙ୍କ କ୍ଷେତ୍ରରେ ତାହା ହିଁ ହୋଇଥିଲା । ଅମ୍ବେଦକରଙ୍କର ସେତେବେଳେ ଯେପରି ଦରିଦ୍ର ଅବସ୍ଥା, ସେଥିରେ ଉଚ୍ଚଶିକ୍ଷା ପାଇଁ କଲେଜରେ ନାମ ଲେଖାଇବା ଅସମ୍ଭବ ଥିଲା । କିନ୍ତୁ ବରୋଦାର ମହାରାଜା ଶୟାଜୀ ରାଓ ଗାୟକୱାଡ଼୍‌ଙ୍କର ଏହି ଅଦ୍ଭୁତ ମେଧାବୀ ଛାତ୍ରଟି ପ୍ରତି ସୁଦୃଷ୍ଟି କିପରି ପଡ଼ିଲା କେଜାଣି, ସେ ଏଲଫିନ୍‌ଷ୍ଟୋନ୍ କଲେଜରେ ପଢ଼ିବା ପାଇଁ ତାଙ୍କ ପାଇଁ ମାସିକ ପଚିଶ ଟଙ୍କାର ବୃତ୍ତି ବ୍ୟବସ୍ଥା କରିଦେଲେ । କଲେଜର ପ୍ରଫେସର ମୁଲ୍ଲର ପଢ଼ିବା ପାଇଁ ତାଙ୍କୁ ଆବଶ୍ୟକୀୟ

ବସ୍ତ୍ରପତ୍ର ଓ ପୋଷାକ ଇତ୍ୟାଦି ଦେଲେ । କିନ୍ତୁ କଲେଜର ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ ଏପରି ରକ୍ଷଣଶୀଳ ଥିଲେ ଯେ, ସେ ଅମ୍ବେଦକରଙ୍କୁ କପେ ଚା' ଦେବା ତ ଦୂରର କଥା ମୁନ୍ଦାଏ ପାଣି ସୁଦ୍ଧା ଦେଉ ନ ଥିଲେ ।

୧୯୧୩ ଖ୍ରୀଷ୍ଟାବ୍ଦରେ ଅମ୍ବେଦକର ବି.ଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଇଂରାଜୀ ଓ ପାରସୀ ତାଙ୍କର ଅଧୀତ ବିଷୟ ଥିଲା । ପରବର୍ତ୍ତୀ କାଳରେ ଅମ୍ବେଦକର ଜଣେ ପ୍ରସିଦ୍ଧ ବିଦ୍ୱାନ-ରୂପେ ପରିଚିତ ଥିଲେ ହେଁ କଲେଜ ପରୀକ୍ଷାମାନଙ୍କରେ ସେ ସେପରି କୌଣସି କୃତିତ୍ୱ ଅର୍ଜନ କରିପାରି ନ ଥିଲେ । ଏହି ସମୟରେ ପୁଣି ୧୯୧୩ ଖ୍ରୀଷ୍ଟାବ୍ଦରେ ଫେବ୍ରୁଆରୀ ୨ ତାରିଖ ଦିନ ଅମ୍ବେଦକରଙ୍କ ପିତା ରାମଜୀଙ୍କର ପରଲୋକ ହୋଇଗଲା । ପିତାଙ୍କ ମୃତ୍ୟୁରେ ଅମ୍ବେଦକର ଭାଙ୍ଗି ପଡ଼ିଥିଲେ । ଅମ୍ବେଦକରଙ୍କୁ ଉପଯୁକ୍ତ ଭାବରେ ଶିକ୍ଷିତ କରିବା ଅଭିପ୍ରାୟରେ ରାମଜୀ ଋଣ କରିବା ପାଇଁ ସୁଦ୍ଧା ପଶ୍ଚାତ୍‌ପଦ ହୋଇ ନ ଥିଲେ ।

---

# ଅମ୍ବେଦକରଙ୍କ କର୍ମ ଜୀବନ

ଏହି ସମୟରେ ବରୋଦାର ମହାରାଜା ଶୟାଜୀ ରାଓ ଗାୟକଓ୍ୱାଡ଼ଙ୍କ ଦରବାରରେ ଅମ୍ବେଦକରଙ୍କୁ ଗୋଟାଏ ଚାକିରି ମିଳିଗଲା। ବସ୍ତୁତଃ ଏଥିପାଇଁ ଅମ୍ବେଦକର କୌଣସି ଦରଖାସ୍ତ ପଠାଇ ନଥିଲେ। ଅପର ପକ୍ଷରେ ମହାରାଜା ତାଙ୍କୁ ଆମନ୍ତ୍ରଣ କରିଥିଲେ, ଏଇ ଚାକିରି ଗ୍ରହଣ କରିବା ପାଇଁ। ସେତେବେଳେ ବରୋଦା ରାଜ ସରକାରଙ୍କର ସବୁ ବଡ଼ ବଡ଼ ଚାକିରିରେ ରହିଥିଲେ, ଉଚ୍ଚବର୍ଣ୍ଣର ହିନ୍ଦୁମାନେ। ବରୋଦା ରାଜସରକାରରେ ଛୁଆଁଛୁତ ଏତେ ପ୍ରବଳ ଥିଲା ଯେ ଅମ୍ବେଦକରଙ୍କ ଅଫିସରେ ପିଅନମାନେ ସୁଦ୍ଧା ଛୁଆଁ ଲାଗିବା ଭୟରେ ତାଙ୍କ ପାଖରେ ଅଫିସ ଫାଇଲ ପତ୍ର ନରଖି, ତାଙ୍କ ଉପରକୁ ସେସବୁ ଫିଙ୍ଗି ଦେଉଥିଲେ। ବରୋଦା ସହରରେ କେଉଁଠି ରହିବା ପାଇଁ ଭଲ ଜାଗାଟିଏ ସୁଦ୍ଧା ମିଳୁ ନଥିଲା। ସେ ତେଣୁ ପଣ୍ଡିତ ଆତ୍ମାରାମ ନାମକ ଜଣେ ଆର୍ଯ୍ୟ-ସମାଜୀଙ୍କ ପାଖରେ ରହୁଥିଲେ। ବରୋଦାର ସାମାଜିକ ପରିସ୍ଥିତି ଓ ପରିବେଶ ତାଙ୍କ ପାଇଁ ଅସହ୍ୟ ହେବାରୁ, ଯେତେ ଶୀଘ୍ର ପାରନ୍ତି ଚାକିରିରୁ ଇସ୍ତଫା-ଦେବା ପାଇଁ ସେ ମନ ସ୍ଥିର କରିନେଲେ। ଏହି ସମୟରେ ଅମ୍ବେଦକରଙ୍କ ଜୀବନରେ ଆଉ ଏକ ଅଭାବନୀୟ ଘଟଣା ଘଟିଲା। ବରୋଦାର ପ୍ରଗତିଶୀଳ ମହାରାଜା ଶୟାଜୀ ରାଓ ଗାୟକଓ୍ୱାଡ଼ ଅମ୍ବେଦକରଙ୍କୁ ଜୁନ୍ ୪ ତାରିଖ ଦିନ ଡକାଇ ପଠାଇଲେ ଓ ସେ ବରୋଦା ରାଜ ସରକାରରେ ଚାକିରି କରିବେ ବୋଲି, ଗୋଟିଏ ଦଲିଲ୍ ସ୍ୱାକ୍ଷର କଲେ। ଏହାପରେ

ଜୁଲାଇ ତୃତୀୟ ସପ୍ତାହରେ ଗାୟକଓ୍ୱାଡ଼୍ ବିଦ୍ୟାର୍ଥୀ ରୂପେ ସେ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟରେ ଯୋଗଦାନ କଲେ । ବିଦେଶର ଏକ ବିଶ୍ୱବିଦ୍ୟାଳୟରେ ଯୋଗଦାନ କରିବାରେ ଅମ୍ବେଦକର ହିଁ ଥିଲେ ପ୍ରଥମ ଅଛୁତ !

କଲମ୍ବିଆରେ ସେ ଗୋଟିଏ କସ୍‌ମୋପଲିଟାନ୍ କ୍ଲବରେ ରହୁଥିଲେ । କସ୍‌ମୋପଲିଟାନ୍‌ର ଅର୍ଥ ହେଉଛି, ଦେଶ, ଜାତି ଓ ଧର୍ମର ଏଠାରେ କୌଣସି ବିଚାର ନଥିଲା । ସମସ୍ତଙ୍କ ସହିତ ଏଠାରେ ସମାନ ମର୍ଯ୍ୟାଦାର ସହିତ ସେ ଚଳିପାରୁଥିଲେ ଓ ମିଶିପାରୁଥିଲେ । କଲମ୍ବିଆ ବିଶ୍ୱବିଦ୍ୟାଳୟର ପରିବେଶରେ ତାଙ୍କର ମାନସିକ ଦିଗ୍‌ବଳୟ ଅନେକ ସଂପ୍ରସାରିତ ହୋଇଥିଲା ।

ବିଶିଷ୍ଟ ଅର୍ଥନୀତିଜ୍ଞ ପ୍ରଫେସର ସେଲିଜମ୍ୟାନ୍ ତାଙ୍କର ଅଧ୍ୟାପକ ଥିଲେ । ଅମ୍ବେଦକର ଖୁବ୍ ଅଧ୍ୟବସାୟୀ ଛାତ୍ର ଥିଲେ । ଦିନକୁ ୧୮ ଘଣ୍ଟା ସେ ଅଧ୍ୟୟନ କରୁଥିଲେ । ସେତେବେଳେ ପ୍ରସିଦ୍ଧ କଂଗ୍ରେସ ନେତା ଲାଲା ଲଜପତ୍ ରାୟ କଲମ୍ବିଆରେ ନିର୍ବାସିତ ହୋଇ ରହୁଥିଲେ । ଲାଲାଜୀ ପ୍ରତ୍ୟହ କର୍ଣ୍ଣେଜ ଲାଇବ୍ରେରୀକୁ ଆସନ୍ତି । କ୍ରମେ ଅମ୍ବେଦକରଙ୍କ ପ୍ରତି ଲାଲାଜୀଙ୍କର ଦୃଷ୍ଟି ପଡ଼େ ଓ ସେମାନେ ପରସ୍ପର ସହିତ ପରିଚିତ ହୁଅନ୍ତି । ସେତେବେଳେ ଭାରତରେ ଯେଉଁ ମୁକ୍ତି ସଂଗ୍ରାମ ଚାଲିଥିଲା, ସେ ସମ୍ପର୍କରେ ଉଭୟଙ୍କ ମଧ୍ୟରେ ଅନେକ ସମୟରେ ଆଲୋଚନା ହେଉଥିଲା ।

୧୯୧୫ ଖ୍ରୀଷ୍ଟାବ୍ଦରେ ଅମ୍ବେଦକର ଏମ୍. ଏ. ଡିଗ୍ରୀ ହାସଲ କରିଥିଲେ । ଏଥିପାଇଁ 'ପ୍ରାଚୀନ ଭାରତରେ ବାଣିଜ୍ୟ'

ଶୀର୍ଷକ ଏକ ଗବେଷଣା ମୂଳକ ସନ୍ଦର୍ଭ ଅମ୍ବେଦକରଙ୍କୁ ପ୍ରସ୍ତୁତ କରିବା ପାଇଁ ପଡ଼ିଥିଲା । ଏହି ସନ୍ଦର୍ଭ ଉପରେ ଅମ୍ବେଦକରଙ୍କୁ କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଡିଗ୍ରୀ ମିଳିଥିଲା । ଏହା ପରବର୍ଷ ଡକ୍ଟର ଗୋଲ୍ଡେନ୍ ଓ୍ୱେକରଙ୍କ ନୃତତ୍ତ୍ୱ ପାଠଚକ୍ରରେ ଅମ୍ବେଦକର ଭାରତରେ ଜାତି ପ୍ରଥା ସମ୍ପର୍କରେ ଏକ ଉଚ୍ଚକୋଟୀର ପ୍ରବନ୍ଧ ପାଠ କରିଥିଲେ । ୧୯୧୬ ମସିହା ମେ ମାସର 'ଇଣ୍ଡିଆନ୍ ଆଣ୍ଟିକ୍ୱାରୀ' ପତ୍ରିକାରେ ଏହା ପ୍ରକାଶିତ ହୋଇ ଉଚ୍ଚ ପ୍ରଶଂସିତ ହୋଇଥିଲା । ପରବର୍ତ୍ତୀ କାଳରେ ଏହି ପ୍ରବନ୍ଧଟି ଏକ ସ୍ୱତନ୍ତ୍ର ପୁସ୍ତିକା ଆକାରରେ ପ୍ରକାଶ ପାଇଥିଲା । ଏହା ହେଉଛି ଡକ୍ଟର ଅମ୍ବେଦକରଙ୍କ ପ୍ରଥମ ପ୍ରକାଶିତ ପୁସ୍ତକ । ଏଥିରେ ସେ ମନୁଙ୍କର ଜାତିତତ୍ତ୍ୱର ତୀବ୍ର ସମାଲୋଚନା କରିଥିଲେ ।

୧୯୧୬ ମସିହା ଜୁନ୍ ମାସରେ ଅମ୍ବେଦକର ତାଙ୍କର ଦ୍ୱିତୀୟ ଗବେଷଣା ମୂଳକ ନିବନ୍ଧ ପି.ଏଚ୍.ଡ଼ି. ଡିଗ୍ରୀ ପାଇଁ ପ୍ରସ୍ତୁତ କରିଥିଲେ । ଭାରତର ଆର୍ଥିକ ବ୍ୟବସ୍ଥା ସମ୍ପର୍କରେ ଏହି ନିବନ୍ଧଟି ଲିଖିତ ହୋଇଥିଲା । ଆଠ ବର୍ଷ ପରେ ଏହି ନିବନ୍ଧ ପ୍ରାଦେଶିକ ଆର୍ଥିକ ବ୍ୟବସ୍ଥାର ଅଭିବ୍ୟକ୍ତି (The Evolution of Provincial Financial in British Capital) ଶିରୋନାମାରେ ପୁସ୍ତକ ଆକାରରେ ପ୍ରକାଶିତ ହୋଇଥିଲା । ପ୍ରଫେସର ଏସ୍.ଏ. ସେଲିଗ୍‌ମ୍ୟାନ ଏହି ପୁସ୍ତକର ଭୂମିକା ଲେଖିଥିଲେ ଓ ଅମ୍ବେଦକର ଏହି ପୁସ୍ତକକୁ ମହାରାଜା ଶାହୁଜୀ ରାଓଙ୍କ ନାମରେ ଉତ୍ସର୍ଗ କରିଥିଲେ । ଏହାପରେ ଅମ୍ବେଦକର କଲମ୍ବିଆ ବିଶ୍ୱବିଦ୍ୟାଳୟ ଛାଡ଼ି ଆସିଲେ ଲଣ୍ଡନ । ସେଠାରେ 'ସ୍କୁଲ ଅଫ୍ ଇକନମିକସ୍ ଆଣ୍ଡ୍ ପଲିଟିକାଲ ସାଇନ୍‌ସ୍‌ରେ ଜଣେ ସ୍ନାତକ

ଛାତ୍ର ରୂପେ ୧୯୧୭ ମସିହା ଜୁନ୍ ମାସରେ ସେ ନାମ ଲେଖା-ଇଲେ । କଲମ୍ବିଆର ପ୍ରଫେସର ସେଲୀଜ୍‌ମ୍ୟାନ୍ ଏଥିପାଇଁ ପ୍ରଫେସର କାନାନ୍ ଓ ସିଡ୍‌ନୀ ଓ୍ୱେଭଙ୍କ ନିକଟକୁ ସୁପାରିଶ ପତ୍ର ପଠାଇଥିଲେ । ଏହି ସମୟରେ ୧୯୧୭ ମସିହା ଅକ୍ଟୋବର ମାସରେ ଲଣ୍ଡନ୍‌ରେ ଆଇନ୍ ପଢ଼ିବା ପାଇଁ ସେ ଗ୍ରେଜ୍‌ଇନ୍‌ରେ ଯୋଗ ଦେଲେ । ମାତ୍ର ଲଣ୍ଡନ୍‌ରେ ସ୍କୁଲ ଅଫ୍ ଇକନମିକ୍ସ୍‌କୁ ଏମ୍. ଏସ୍. ସି. ଅର୍ଥନୀତି) ଡିଗ୍ରୀ ପାଇଁ ଗୋଟିଏ ନିବନ୍ଧ ପ୍ରସ୍ତୁତ କରୁଥିବାବେଳେ ତାଙ୍କୁ ଲଣ୍ଡନ ଛାଡ଼ି ଅସିବା ପାଇଁ ପଡ଼ିଲା । କାରଣ ବରୋଦାର ମହାରାଜା ଶୟାଜୀ ରାଓ ତାଙ୍କୁ ଯେଉଁ ବୃତ୍ତି ଦେଉଥିଲେ, ତାହାର କାର୍ଯ୍ୟ କାଳ ଶେଷ ହୋଇ ଯିବାରୁ ତାଙ୍କୁ ବାଧ ହୋଇ ଲଣ୍ଡନ ଛାଡ଼ି ଆସିବା ପାଇଁ ପଡ଼ିଲା । ଅମ୍ବେଦକର ଏହାପରେ ବୃତ୍ତିର ସମୟସୀମା ଆଉ କିଛି କାଳ ବଢ଼ାଇବାପାଇଁ ମହାରାଜାଙ୍କୁ ବହୁ ଅନୁରୋଧ କରିଥିଲେ; ମାତ୍ର ତାହା ଫଳପ୍ରଦ ହୋଇ ନଥିଲା । ତଥାପି ପ୍ରଫେସର କାନାନ୍‌ଙ୍କ ସୁପାରିଶ ବଳରେ ଅକ୍ଟୋବର ୧୯୧୭ ମସିହା ଠାରୁ ଚାରିବର୍ଷ ମଧ୍ୟରେ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ସେ ପୁଣି ତାଙ୍କର ଅଧ୍ୟୟନ ଆରମ୍ଭ କରି ପାରିବେ ବୋଲି ଅନୁମତି ହାସଲ କରିଥିଲେ ।

—

# ଭାରତରେ ଅମ୍ବେଦକର

ଭାରତକୁ ଫେରିବା ପରେ ୧୯୧୭ ମସିହା ଜୁଲାଇ ମାସରେ ମହାରାଜା ବରୋଦାଙ୍କର ମିଲିଟାରୀ ସେକ୍ରେଟାରୀ ରୂପେ ଅମ୍ବେଦକର ନିଯୁକ୍ତି ପାଇଲେ । କିନ୍ତୁ ବରୋଦା ରାଜ୍ୟର ଅର୍ଥ-ମନ୍ତ୍ରୀ ରୂପେ ତାଙ୍କୁ ନିଯୁକ୍ତି ଦେବା ପୂର୍ବରୁ ରାଜ୍ୟର ପ୍ରଶାସନ ସମ୍ପର୍କରେ ଅଭିଜ୍ଞତା ହାସଲ କରିବା ପାଇଁ ଏହା ଥିଲା ପ୍ରାଥମିକ ପଦକ୍ଷେପ । କିନ୍ତୁ ଏତେ ବଡ଼ ପାହ୍ୟାର ଚାକିରି ପାଇ ସେ ବରୋଦାରେ ପହଞ୍ଚିବାବେଳେ ତାଙ୍କୁ ପାଛୋଟି ନେବା ପାଇଁ କେହି ଜଣେ ହେଲେ ନଥିଲେ । ବିଦେଶରେ ବଡ଼ ବଡ଼ ପ୍ରଫେସରମାନେ ତାଙ୍କର ବହୁତ ତାରିଫ୍ କରିଥାଇ ପାରନ୍ତି; ସେ ବହୁ ଡିଗ୍ରୀ ହାସଲ କରିଥାଇ ପାରନ୍ତି; ମାତ୍ର ସ୍ୱଦେଶରେ ସେ ଜଣେ ଅଚ୍ଛୁତ । ସେଥିପାଇଁ ବରୋଦାରେ ରହିବା ପାଇଁ ତାଙ୍କୁ କୌଣସି ହୋଟେଲ କିମ୍ବା ହଷ୍ଟେଲ ମିଳିଲା ନାହିଁ । ଅବଶେଷରେ ପାର୍ସୀମାନଙ୍କର ଗୋଟିଏ ଚଟିଘରେ ଛଦ୍ମ ବେଶରେ ତାଙ୍କୁ ରହିବା ପାଇଁ ପଡ଼ିଲା । ଏଣେ ଅଫିସରେ ତାଙ୍କର ଅଧସ୍ତନ କର୍ମଚାରୀ ଓ ପିଅନମାନେ ତାଙ୍କ ପ୍ରତି ବ୍ୟବହାର କରୁଥିଲେ, ସେ ଯେପରି ଏକ କୁଷ୍ଠରୋଗୀ । ପିଅନମାନେ ତାଙ୍କୁ ହାତରେ ଫାଇଲ ନ ଦେଇ ସେସବୁ ତାଙ୍କ ଟେବୁଲ ଉପରକୁ ଫିଙ୍ଗି ଦେଉଥିଲେ । ସେ ଅଛୁଆଁ । ସେଇ କାରଣରୁ ତାଙ୍କ ଟେବୁଲ ଟେକ ସୁଦ୍ଧା ଅଛୁଆଁ । ଅଫିସରେ ତାଙ୍କୁ ପିଇବା ପାଇଁ ପାଣି ଦେବ ସୁଦ୍ଧା କିଏ ? ପିଅନମାନେ ତ ଆଉ ତାଙ୍କୁ ପାଣି ଆଣି ଦେବେ ନାହିଁ ! ଜଣେ ଅଛୁଆଁ ଅଫିସରକୁ ପିଇବା ପାଇଁ

ଗିଲାସରେ ପାଣି ଆଣି ଦେଲେ ସେମାନଙ୍କର ଜାତି ମାରି ହୋଇ ଯିବ ଯେ ! ଅମ୍ବେଦକରଙ୍କ ଅବସ୍ଥା ଏପରି ଅସହ୍ୟ ହେବାରୁ ସେ ବାଧ୍ୟ ହୋଇ ପବ୍ଲିକ୍ ଲାଇବ୍ରେରୀ ବାରଣ୍ଡାରେ ଆଶ୍ରୟ ନେଲେ । ଶେଷକୁ ପାର୍ସୀମାନେ ସୁଦ୍ଧା ଅମ୍ବେଦକରଙ୍କୁ ସେଇ ଚଣ୍ଡୀ ଘରୁ ତଡ଼ିଦେଲେ । ଏଇ ପ୍ରକାର ପରିସ୍ଥିତିରେ ପଡ଼ି ମହାରାଜାଙ୍କୁ ସେ ତାଙ୍କ ଅବସ୍ଥା ସମ୍ପର୍କରେ ଜଣାଇଲେ । କିନ୍ତୁ ବରୋଦାର ଦେଓ୍ୱାନ୍ ଏ ବ୍ୟାପାରରେ ତାଙ୍କୁ କୌଣସି ପ୍ରକାରେ ସାହାଯ୍ୟ କରି ପାରିବେ ନାହିଁ ବୋଲି ଜଣାଇ ଦେଲେ । ସେ ଅବଶ୍ୟ ଜାଣନ୍ତି, ଅମ୍ବେଦକର ବିଦ୍ୱାନ୍ ଓ ଗୁଣୀ ଲୋକ; ମାତ୍ର ହିନ୍ଦୁମାନଙ୍କର ଜାତିଆଣ କୁସଂସ୍କାରକୁ ସେ ଦୂର କରି ପାରିବେ କିପରି ? ତାଙ୍କର ଜାତି, ତାଙ୍କ ପ୍ରତି ଏକ ଅଭିଶାପ ପରି ହୋଇଥିବାରୁ ଅମ୍ବେଦକର ବାଧ୍ୟ ହୋଇ ବରୋଦା ଛାଡ଼ି ଚାଲି ଆସିଲେ । ତା'ପରେ ତାଙ୍କର ଜଣେ ବନ୍ଧୁ କେ.ଏ. କେଲୁସ୍କରଙ୍କ ଜରିଆରେ ମହାରାଜା ଶୟାଜୀ ରାଓଙ୍କ ଦୃଷ୍ଟିକୁ ତାଙ୍କ ପ୍ରତି ଯେଉଁ ପ୍ରକାର ଦୁର୍ବ୍ୟବହାର ଚାଲିଛି, ତାହା ଆଣିଥିଲେ ! କିନ୍ତୁ ଏଥିରୁ ମଧ୍ୟ କିଛି ସୁଫଳ ହେଲା ନାହିଁ । ମହାରାଜା ଶୟାଜୀ ରାଓ ସୁଦ୍ଧା ତାଙ୍କୁ ସାହାଯ୍ୟ କରି ପାରିଲେ ନାହିଁ । ବରୋଦାର ଜଣେ ଅଧ୍ୟାପକ ତାଙ୍କୁ ଆଶ୍ରୟ ଦେବାପାଇଁ ପ୍ରଥମେ ପ୍ରସ୍ତୁତ ଥିଲେ ; ମାତ୍ର ପରେ ସେ ତାହାକୁ ପ୍ରତ୍ୟାହାର କରିନେଲେ । ଏହାପରେ ୧୯୧୭ ମସିହା ନଭେମ୍ବର ମାସରେ ଅମ୍ବେଦକର ବରୋଦା ଛାଡ଼ି ବମ୍ବେ ଫେରି ଆସିଲେ ।

---

# ବମ୍ବେରେ ଅମ୍ବେଦକର

ଡକ୍ଟର ଅମ୍ବେଦକର ବମ୍ବେରେ ପହଞ୍ଚିବା ପରେ ତାଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ଶମ୍ଭାଜୀ ବାଘମାରେ ଓ ଅନ୍ୟମାନେ ଗୋଟିଏ ସଭାର ଆୟୋଜନ କରିଥିଲେ । କିନ୍ତୁ ସମ୍ବର୍ଦ୍ଧନା ସଭାକୁ ପୂର୍ବରୁ ବରିଷ୍ଠ ସଭାପତି ଯାର ଚମନଲାଲ ଶୀତଲଭାଦ କିନ୍ତୁ ସଭାକୁ ଆସିଲେ ନାହିଁ ! ଗୋଟାଏ ଅଛୁତକୁ ପୁଣି ସମ୍ବର୍ଦ୍ଧନା !

ବମ୍ବେରେ ଅମ୍ବେଦକର ପୁଣି ଥରେ ତାଙ୍କର ଜୀବନକୁ ନୂଆ ଭାବରେ ଆରମ୍ଭ କରିବା ପାଇଁ ଚେଷ୍ଟା ଚଳାଇଲେ । ଜାଣେ ପାର୍ସୀ ଭଦ୍ରଲୋକଙ୍କର ଆନୁକୂଲ୍ୟରେ ଦୁଇଜଣ ଛାତ୍ରଙ୍କ ପାଇଁ ତାଙ୍କୁ ଟିଉସନ ମିଳିଗଲା । କଲମ୍ବିଆ ବିଶ୍ୱବିଦ୍ୟାଳୟର ପି.ଏଚ୍. ଡ଼ି ସ୍ୱଦେଶରେ ଆସି ହେଲେ ଘରୋଇ ଟ୍ୟୁଟର । କାରଣ ସେ ଥିଲେ ଅଛୁତ ! ସେଥି ସଙ୍ଗେ ସଙ୍ଗେ ଷ୍ଟକ ଏକ୍ସଚେଞ୍ଜରେ କାରବାରୀମାନଙ୍କୁ ପରାମର୍ଶ ଦେବାପାଇଁ ସେ ଗୋଟିଏ ବ୍ୟବସାୟ ସଂସ୍ଥା ଖୋଲିଲେ । ମାତ୍ର ଜଣେ ଅଛୁତ ପାଖରୁ ପରାମର୍ଶ ଦେବାପାଇଁ କେଉଁ କାରବାରୀ ବା ଆସିବ ? ସେଥିପାଇଁ ଅମ୍ବେଦକର ଏ ସଂସ୍ଥାକୁ ଚିରକାଳ ପାଇଁ ବନ୍ଦ କରିଦେଲେ । ସେ ଯେଉଁ ଡାଳ ଧରିଲେ ସେ ଡାଳ ଭାଙ୍ଗିଲା । ତାଙ୍କର ଅପରାଧ ସେ ଥିଲେ ଅଛୁତ ।

ଅବଶେଷରେ ୧୯୧୮ ମସିହା ନଭେମ୍ବର ମାସରେ ବମ୍ବେର ସିଡେନହାମ୍ କଲେଜରେ ଅସ୍ଥାୟୀ ଭାବରେ ପଲିଟି-

କାଲ ଇକନମି ବିଭାଗରେ ତାଙ୍କୁ ପ୍ରଫେସର ଚାକିରି ମିଳିଲା । ସେତେବେଳେ ଚାକିରି ଅସ୍ଥାୟୀ ହେଲେ ସୁଦ୍ଧା ଏହା ତାଙ୍କ ପକ୍ଷରେ ଅତ୍ୟନ୍ତ ପ୍ରୟୋଜନ ଥିଲା । କାରଣ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସ ରେ ପୁଣି ଅଧ୍ୟୟନ କରିବା ପାଇଁ ତାଙ୍କର ଅର୍ଥ ପ୍ରୟୋଜନ ଥିଲା । ସେଥିପାଇଁ ଅର୍ଥ ସଂଗ୍ରହ ଉଦ୍ଦେଶ୍ୟରେ କେବଳ ସେ ଅସ୍ଥାୟୀ ଭାବରେ ସିଡେ଼ନ୍‌ହାମ୍ କଲେଜରେ ଅଧ୍ୟାପକ ଚାକିରି ଗ୍ରହଣ କରିଥିଲେ ।

ସିଡେ଼ନ୍‌ହାମ୍ କଲେଜରେ ଡକ୍ଟର ଅମ୍ବେଦକରଙ୍କ ବାଦ୍‌ବତ୍ତା ଓ ଅଧ୍ୟାପନା ଛାତ୍ରମାନଙ୍କୁ ଖୁବ୍ ଚମତ୍କୃତ କରିଥିଲା । ସେଥିପାଇଁ ଅନ୍ୟ କଲେଜମାନଙ୍କରୁ ଛାତ୍ରମାନେ ସୁଦ୍ଧା ତାଙ୍କର ଲେକ୍‌ଚର ଶୁଣିବା ପାଇଁ ଆସୁଥିଲେ । ତଥାପି ତାଙ୍କ ପ୍ରତି ସାମାଜିକ ବ୍ୟବହାରରେ କୌଣସି ପରିବର୍ତ୍ତନ ପରିଲକ୍ଷିତ ହେଉ ନ ଥିଲା । ଉଚ୍ଚ ଜାତିର ଅଧ୍ୟାପକମାନେ ଅଧ୍ୟାପକମାନଙ୍କପାଇଁ ଉଦ୍ଦିଷ୍ଟ ଜଳପାତ୍ରରେ ଅମ୍ବେଦକର ପାଣି ପିଇବାର ସେମାନେ ପ୍ରବଳ ପ୍ରତିବାଦ କରୁଥିଲେ । ଏହିପରି ଲାଞ୍ଛନା ସତ୍ତ୍ୱେ ସେ ଏହି କଲେଜରେ ୧୯୧୮ ମସିହା ନଭେମ୍ବର ୧୧ ତାରିଖ ଠାରୁ ୧୯୨୦ ମସିହା ୧୧ ତାରିଖ ମାର୍ଚ୍ଚ ପର୍ଯ୍ୟନ୍ତ ସିଡେ଼ନହାମ୍ କଲେଜରେ ଚାକିରି କରିବା ପରେ ଲଣ୍ଡନରେ ପୁଣି ଆଇନ୍ ଓ ଅର୍ଥନୀତି ଅଧ୍ୟୟନ କରିବା ଉଦ୍ଦେଶ୍ୟରେ ଚାକିରି ଇସ୍ତଫା ଦେଇଦେଲେ । ବମ୍ବେରେ ତାଙ୍କର ରହଣି କାଳରେ ସେ ୭୦୦୦ ଟଙ୍କା ସଞ୍ଚୟ କରିଥିଲେ । ଏହାଛଡ଼ା କୋଲ୍ହାପୁରର ମହାରାଜା ତାଙ୍କୁ ୧୫୦୦ ଟଙ୍କା ସାହାଯ୍ୟ ଦେଇଥିଲେ । ଏତକ ପାଣ୍ଠିଧରି ଅମ୍ବେଦକର ପୁଣି ତାଙ୍କର ଅଧ୍ୟୟନ ପାଇଁ ଲଣ୍ଡନ ବାହାରିଲେ ।

ବମ୍ବେରେ ଥିବାବେଳେ ୧୯୨୦ ମସିହା ଜାନୁୟାରୀ ମାହରେ 'ମୂକନାୟକ' ନାମରେ ଏକ ସାପ୍ତାହିକ ପତ୍ରିକାର ପ୍ରକାଶ ଅମ୍ବେଦକର ଆରମ୍ଭ କରିଥିଲେ । ଭାରତରେ ଦଳିତ ଅସ୍ପୃଶ୍ୟମାନଙ୍କର ଦାବୀ ଉପସ୍ଥାପିତ କରି ଏହି ପତ୍ରିକାର ପ୍ରଥମ ସଂଖ୍ୟାର ସଂପାଦକୀୟରେ ଡକ୍ଟର ଅମ୍ବେଦକର ଲେଖିଥିଲେ —

"ଦେଶର ସମ୍ବାଦପତ୍ର ସବୁ ମୁଷ୍ଟିମେୟ କେତେକ ଜାତିଙ୍କ ସ୍ୱାର୍ଥ ରକ୍ଷା ପାଇଁ କାର୍ଯ୍ୟ କରୁଅଛନ୍ତି ।... ସେମାନେ ଅନ୍ୟ ଜାତି ମାନଙ୍କରେ ସମସ୍ୟା ଓ ସ୍ୱାର୍ଥ ଚିନ୍ତା କରୁ ନାହାନ୍ତି ।......ଏ ଦେଶ ହେଉଛି ଅସାମ୍ୟର ଜନ୍ମଭୂମି କ୍ଷମତା ଓ ଜ୍ଞାନର ଅଭାବରୁ ଅବ୍ରାହ୍ମଣ ପୁଣି ଦଳିତମାନେ କୌଣସି ପ୍ରଗତି କରିପାରୁ ନାହାନ୍ତି ।......ଦାରିଦ୍ର୍ୟ ଅସାମ୍ୟ ଓ ଅଜ୍ଞତା ସମାଜର ଗୋଟିଏ ବିରାଟ ଅଂଶକୁ ଦଳିତ କରି ରଖିଅଛି ।"

କୋଲ୍ହାପୁରର ମହାରଜା ଏହି ପତ୍ରିକା ପାଇଁ ହଜାରେ ଟଙ୍କା ସାହାଯ୍ୟ ଦେଇଥିଲେ । କିନ୍ତୁ ପତ୍ରିକାଟି ବେଶୀକାଳ ତିଷ୍ଠି ପାରିନଥିଲା ।

ଅମ୍ବେଦକର ବମ୍ବେରେ ଥିବାବେଳେ ଥରେ ୧୯୧୮ ମସିହାରେ ନାଗପୁର ଠାରେ ଓ ଅନ୍ୟଥରେ ୧୯୨୦ ମସିହାରେ କୋଲ୍ହାପୁର ଠାରେ ଦଳିତ ଜାତିମାନଙ୍କର ଏକ ସମ୍ମିଳନୀ କୋଲ୍ହାପୁର ମହାରାଜାଙ୍କର ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ଅମ୍ବେଦକର ନାଗପୁର ସମ୍ମିଳନୀରେ ଉପସ୍ଥିତ

ଥିଲେ । ଦଳିତମାନଙ୍କର ସାମାଜିକ ଅଭ୍ୟୁଥାନ ଏହି ସମ୍ମିଳନୀର ଲକ୍ଷ୍ୟଥିଲା । ନାଗପୁର ସମ୍ମିଳନୀରେ ଅମ୍ବେଦକର ଡିପ୍ରେସଡ୍ କ୍ଲାସେସ୍ ମିଶନ ଓ ଏହାର ନେତା ଭି.ଆର. ସିନ୍ଦେଙ୍କର ତୀବ୍ର ସମାଲୋଚନା କରିଥିଲେ । ସାର ନାରାୟଣ ଚନ୍ଦ୍ରବର୍କାରଙ୍କ ସାହାଯ୍ୟ ଓ ସମର୍ଥନରେ ଏହି ଅନୁଷ୍ଠାନଟି ଗଠିତ ହୋଇଥିଲା । ସର୍ଭେଣ୍ଟସ୍ ଅଫ୍ ଇଣ୍ଡିଆ ସୋସାଇଟିର ଏଥି ପ୍ରତି ସହଯୋଗ ଓ ସହାନୁଭୂତି ମଧ୍ୟ ରହିଥିଲା ।

ଦଳିତ ଜାତିମାନଙ୍କର ଅଭ୍ୟୁଥାନର ଇତିହାସରେ ଏହି ନାଗପୁର ସମ୍ମିଳନୀ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏହି ସମ୍ମିଳନୀରେ ଅମ୍ବେଦକର ଦୃଢ଼ କଣ୍ଠରେ ଘୋଷଣା କରିଥିଲେ ଯେ ଦଳିତ ବା ଅସ୍ପୃଶ୍ୟମାନଙ୍କ ଦ୍ୱାରା ପ୍ରତ୍ୟକ୍ଷ ଭାବରେ ପରିଚାଳିତ ନହେଲେ, ସେପରି ଅନୁଷ୍ଠାନ କିମ୍ବା ବ୍ୟକ୍ତି ବିଶେଷଙ୍କ ଦଳିତମାନଙ୍କର ସ୍ୱାର୍ଥରକ୍ଷା ପାଇଁ କୌଣସି ଅଧିକାର ନାହିଁ; କିମ୍ବା ତାହା ସମ୍ଭବ ମଧ୍ୟ ନୁହେଁ । ଏହି ସମ୍ମିଳନୀରେ ଡିପ୍ରେସଡ୍ କ୍ଲାସେସ୍ ମିଶନର ପ୍ରତିଷ୍ଠାତା ଭି.ଆର. ସିନ୍ଦେ ଓ ଅନ୍ୟମାନଙ୍କ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଗୃହୀତ ହୋଇଥିଲା । ଏହି ନାଗପୁର ସମ୍ମିଳନୀରେ ଦଳିତମାନଙ୍କୁ ନିଜ ପାଦରେ ଠିଆ ହେବା ପାଇଁ ଅନୁପ୍ରେରିତ କରିଥିଲା । ପୁଣି ଅମ୍ବେଦକରଙ୍କ ଭବିଷ୍ୟତ କାର୍ଯ୍ୟପନ୍ଥା ଏହାର ଭିତ୍ତିଭୂମି ଉପରେ ନିର୍ମିତ ହୋଇଥିଲା ।

ଇତି ମଧ୍ୟରେ ଅମ୍ବେଦକରଙ୍କ ମନ ଏପରି ଶକ୍ତ ହୋଇ ଉଠିଥିଲା ଯେ ମରାଠୀ ଭାଷାରେ ଜ୍ଞାନକୋଷ ପ୍ରଣେତା ଡକ୍ଟର ଏସ୍.ବି. କେତକାର ମରାଠୀ ଜ୍ଞାନକୋଷ ପାଇଁ ଲେଖା ଲେଖି କରିବାକୁ ଡକ୍ଟର ଅମ୍ବେଦକରଙ୍କୁ ଆମନ୍ତ୍ରଣ କରିଥିଲେ ।

ମାତ୍ର ଅମ୍ବେଦକର ତାହା ପ୍ରତ୍ୟାଖାନ କରି ଦେଇଥିଲେ ।
୧୯୧୮ ମସିହା ଡିସେମ୍ବର ମାସରେ ବମ୍ବେର ସିଡ଼େନ୍‌ହାମ
କଲେଜରେ ଅର୍ଥନୀତିଜ୍ଞମାନଙ୍କର ଏକ ସମ୍ମିଳନୀ ଅନୁଷ୍ଠିତ
ହୋଇଥିଲା । ଏଥିରେ ଏକ ନିବନ୍ଧ ପାଠ କରିବା ପାଇଁ କଲେଜର
ଅଧ୍ୟକ୍ଷ ଅମ୍ବେଦକରଙ୍କୁ ଆମନ୍ତ୍ରଣ ଜଣାଇଥିଲେ । କିନ୍ତୁ ଯେଉଁ
କଲେଜରେ ସେ ମର୍ଯ୍ୟାଦାର ସହିତ ଗିଲାସେ ପାଣି ପିଇବାର
ସୁଯୋଗରୁ ବଞ୍ଚିତ ହୋଇଥିଲେ, ସେ କଲେଜର ଦୁଆର
ସେ ଆଉ ମାଡ଼ିବେ ନାହିଁ—ଏହା ଥିଲା, ଯେପରି ତାଙ୍କର
ପ୍ରତିଜ୍ଞା ।



## ଲଣ୍ଡନରେ ଅମ୍ବେଦକର

୧୯୨୦ ମସିହା ସେପ୍ଟେମ୍ବର ମାସରେ ଅମ୍ବେଦକର ଲଣ୍ଡନ
ସ୍କୁଲ ଅଫ୍ ଇକନମିକସରେ ତାଙ୍କର ଅସମାପ୍ତ ପାଠ୍ୟକ୍ରମ ଶେଷ
କରିବା ପାଇଁ ପୁଣି ଲଣ୍ଡନ ଚାଲିଗଲେ । ସେଠାରେ ବାରିଷ୍ଟରୀ
ପଢ଼ିବା ପାଇଁ ସେ ଗ୍ରେ'ଜ୍ ଇନ୍‌ରେ ମଧ୍ୟ ଭର୍ତ୍ତି ହୋଇଗଲେ ।
ସେତେବେଳେ ତାଙ୍କର ଆର୍ଥିକ ଅବସ୍ଥା ଅବଶ୍ୟ ଖୁବ୍ ସ୍ୱଚ୍ଛଳ
ନ ଥିଲା । ବମ୍ବେରେ ଥିବାବେଳେ ସେ ଯାହାକିଛି ଅର୍ଥ ସଞ୍ଚୟ
କରିଥିଲେ, ତାହାକୁ ପୁଞ୍ଜି କରି ସେ ଲଣ୍ଡନ ଯାତ୍ରା କରିଥିଲେ ।
କୋଲ୍ହାପୁରର ମହାରାଜା ଅବଶ୍ୟ ତାଙ୍କୁ ଏଥିପାଇଁ କିଛି ଆର୍ଥିକ
ସାହାଯ୍ୟ ଦେଇଥିଲେ । କିନ୍ତୁ ବମ୍ବେରେ ତାଙ୍କର ପରିବାର

ଚଳିବେ କିପରି ? ସେତେବେଳକୁ ପୁଣି ଅମ୍ବେଦକରଙ୍କର ଗୋଟିଏ ପୁଅ ଜନ୍ମ ହୋଇ ସାରିଥିଲା । କୋଲ୍‌ହାପୁରର ମହାରାଜା, ତାଙ୍କର ପରିବାରବର୍ଗ ଯଦି କୋଲ୍‌ହାପୁର ଚାଲି ଆସନ୍ତି, ତା'ହେଲେ ସେମାନଙ୍କର ଭରଣ ପୋଷଣ ଓ ତତ୍ତ୍ୱା-ବଧାନର ଦାୟିତ୍ୱ ସେ ନିଜେ ନେବେ ବୋଲି ରାଜି ହୋଇଥିଲେ । ମାତ୍ର ଅମ୍ବେଦକରଙ୍କ ସ୍ୱାଭିମାନକୁ ଏହା ସୁହାଇଲା ନାହିଁ । ତେଣୁ ସେଥିପାଇଁ କୋଲ୍‌ହାପୁର ମହାରାଜାଙ୍କ ଏ ପ୍ରସ୍ତାବକୁ ସୁଦ୍ଧା ଅମ୍ବେଦକର ନାସ୍ତି କରି ଦେଇଥିଲେ ।

ଲଣ୍ଡନରେ ଅମ୍ବେଦକରଙ୍କୁ ଲଣ୍ଡନ ସ୍କୁଲ ଅଫ୍ ଇକନ-ମିକ୍‌ସରେ ତାଙ୍କର ଅଧ୍ୟୟନ ପୁଣି ନୂଆକରି ଆରମ୍ଭ କରିବା ପାଇଁ ପଡ଼ିଲା । ସେ ପ୍ରଥମେ ଲଣ୍ଡନ ବିଶ୍ୱବିଦ୍ୟାଳୟର ଜେନେରାଲ ଲାଇବ୍ରେରୀ, ତାପରେ ଗୋଲଡ୍ ସ୍ମିଥ୍‌ସ୍ ଲାଇବ୍ରେରୀ ଅଫ୍ ଇକନମିକ ଲିଟରେଚର, ବ୍ରିଟିଶ ମ୍ୟୁଜିୟମ୍ ଲାଇବ୍ରେରୀ ଓ ଇଣ୍ଡିଆ ଅଫିସ ଲାଇବ୍ରେରୀ ପ୍ରଭୃତିର ସଭ୍ୟ ହୋଇଗଲେ । ଏହି ଲାଇବ୍ରେରୀ-ମାନଙ୍କରେ ସେ ଦିନସାରା ବସି ବିଭିନ୍ନ ଗ୍ରନ୍ଥ ଅଧ୍ୟୟନ କରୁଥିଲେ । ମଧ୍ୟାହ୍ନ ଭୋଜନ ପାଇଁ ପକେଟରେ ପଇସା ନ ଥିଲା; ସେଥିପାଇଁ ମଧ୍ୟାହ୍ନ ଭୋଜନ ବିରତିରେ ଅନ୍ୟମାନେ ମଧ୍ୟାହ୍ନ ଭୋଜନ ପାଇଁ ଯିବାବେଳେ ସେ ଲାଇବ୍ରେରୀରେ ଏକୁଟିଆ ବହି ଉପରେ ମୁହଁମାଡ଼ି ବସି ରହୁଥିଲେ । ଲଣ୍ଡନ ବାହାରକୁ ବୁଲିଯିବା କିମ୍ବା ରେଷ୍ଟୁରାଁ, ଥିଏଟର ପ୍ରଭୃତିକୁ ଯିବା ତାଙ୍କ ସ୍ୱପ୍ନର ବାହାରେ ଥିଲା । ବେଳେ ବେଳେ ବମ୍ବେରୁ ତାଙ୍କ ସ୍ତ୍ରୀ ରମାବାଈ ଚିଠିରେ ଅଭାବ ଅସୁବିଧାର କଥା ଲେଖୁଥିଲେ; ମାତ୍ର ଉତ୍ତରରେ ଅମ୍ବେଦକର ତାକୁ ଯାହାକିଛି ଗହଣା ଗାଣ୍ଠି

ଅଛି, ସବୁ ବନ୍ଧକୀ କରିଦେଇ କୌଣସି ମତେ ଚଳିଯିବା ପାଇଁ ଲେଖୁଥିଲେ । ବମ୍ବେ ଫେରିବା ପରେ ସେ ତାଙ୍କ ପାଇଁ ପୁଣି ନୂଆ ଗହଣାଗାଣ୍ଠି କିଣିଦେଇ ପାରିବେ । ଏହି ପ୍ରକାର ପରିସ୍ଥିତିରେ ପଡ଼ି ରମାବାଇଙ୍କ ଅବସ୍ଥା ବଡ଼ ଶୋଚନୀୟ ହୋଇ ପଡ଼ିଥିଲା । କେତେକ ଶୁଭେଚ୍ଛୁ ସ୍ୱେଚ୍ଛାରେ ରମାବାଈଙ୍କୁ ସାହାଯ୍ୟ କରିବା ପାଇଁ ପ୍ରସ୍ତୁତ ଥିଲେ; ମାତ୍ର ଅମ୍ବେଦକର ତାହା ପ୍ରତ୍ୟାଖ୍ୟାନ କରି ଦେଇଥିଲେ ।

୧୯୨୧ ମସିହା ଜୁନ୍ ମାସରେ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ଏମ୍.ଏସ୍.ସି ଡିଗ୍ରୀ ପାଇଁ ଅମ୍ବେଦକରଙ୍କ ନିବନ୍ଧ ଗୃହୀତ ହୋଇଗଲା । ତଥାପି ତାଙ୍କର ଅଧ୍ୟୟନର ତୃଷା ପ୍ରଶମିତ ହୋଇ ନ ଥିଲା । ଏହାପରେ ସେ ଜର୍ମାନୀର ବନ୍ ବିଶ୍ୱବିଦ୍ୟାଳୟରେ କିଛି କାଳ ଅର୍ଥନୀତି ଅଧ୍ୟୟନ କରିଥିଲେ । ୧୯୨୩ ମସିହା ମାର୍ଚ୍ଚ ମାସରେ 'ଭାରତୀୟ ଟଙ୍କାର ସମସ୍ୟା ଏହାର ଉତ୍ପତ୍ତି ଓ ସମାଧାନ' ଶୀର୍ଷକ ଏକ ନିବନ୍ଧ ଅର୍ଥନୀତିରେ ଡି.ଏସ୍.ସି ଡିଗ୍ରୀ ପାଇଁ ସେ ପ୍ରସ୍ତୁତ କରିଥିଲେ । ମାତ୍ର ଏ ନିବନ୍ଧର ପରୀକ୍ଷକମାନେ ବ୍ରିଟିଶ ସାମ୍ରାଜ୍ୟବାଦୀ ଥିବାରୁ ନିବନ୍ଧର ଉପସ୍ଥାପନାକୁ ସେମାନେ ଗ୍ରହଣ କରିପାରି ନ ଥିଲେ । ସେଥିପାଇଁ ନିବନ୍ଧର ଉପସଂହାର ଓ ସିଦ୍ଧାନ୍ତକୁ ପରିବର୍ତ୍ତନ ନ କରି ଏହାକୁ ଆଉଥରେ ଦାଖଲ କରିବା ପାଇଁ ଅମ୍ବେଦକରଙ୍କୁ ସେମାନେ ନିର୍ଦ୍ଦେଶ ଦେଇଥିଲେ । ସେମାନଙ୍କର ନିର୍ଦ୍ଦେଶ ଅନୁସାରେ ଅମ୍ବେଦକର ଏହି ନିବନ୍ଧକୁ ଆଉ ଥରେ ମଧ୍ୟ ଦାଖଲ କରିଥିଲେ । ଏହି ନିବନ୍ଧ ପାଇଁ ଅମ୍ବେଦକର ଜର୍ମାନୀର ବନ୍ ବିଶ୍ୱବିଦ୍ୟାଳୟରେ ଅର୍ଥନୀତିରେ D.SC ଉପାଧି ଲାଭ କରିଥିଲେ । ଲଣ୍ଡନ ପି.ଏସ୍. କିଙ୍ଗ୍ ଏଣ୍ଡ୍ କମ୍ପାନୀ ପୁସ୍ତକ

ଆକାରରେ ଏହାକୁ ୧୯୨୩ ମସିହା ଡିସେମ୍ବରରେ ପ୍ରକାଶ କରିଥିଲେ । ଏହାର ଭୂମିକାରେ ପ୍ରଫେସର୍ କ୍ୟାନନ୍ ଅମ୍ବେଦକରଙ୍କ ପ୍ରତି ଉଚ୍ଛ୍ୱସିତ ପ୍ରଶଂସା ଜ୍ଞାପନ କରିଥିଲେ । ପରବର୍ତ୍ତୀ କାଳରେ ୧୯୪୭ ମସିହା ମେ ମାସରେ ବମ୍ବେର ଥାକର କମ୍ପାନୀ ଏହାର ପୁନର୍ମୁଦ୍ରଣ କରିଥିଲେ । ଲଣ୍ଡନରେ ଅବସ୍ଥାନ କାଳରେ ଅମ୍ବେଦକର କେବଳ ଯେ ଅଧ୍ୟୟନ ଓ ଗବେଷଣାରେ ନିୟୋଜିତ ଥିଲେ, ତା' ନୁହେଁ । ସ୍ୱଦେଶରେ ଦଳିତମାନଙ୍କର ସମସ୍ୟା ଓ ସେମାନଙ୍କର ଅଭ୍ୟୁତ୍ଥାନ ପାଇଁ ସେ ସର୍ବଦା ଚେଷ୍ଟିତ ମଧ୍ୟ ରହିଥିଲେ । ଭାରତରେ ଅସ୍ପୃଶ୍ୟ ବା ଦଳିତମାନଙ୍କର ସମସ୍ୟା ସମ୍ପର୍କରେ ସେ ଲଣ୍ଡନରେ ଭାରତ-ସଚିବ ଇ.ଏସ୍. ମଣ୍ଟେଗୁ ଓ କଂଗ୍ରେସ ନେତା ବିଠଲ ଭାଇ ପଟେଲଙ୍କ ସହିତ ବିସ୍ତୃତ ଆଲୋଚନା ମଧ୍ୟ କରିଥିଲେ ।

# ସ୍ୱଦେଶ ପ୍ରତ୍ୟାବର୍ତ୍ତନ

ଲଣ୍ଡନ ଓ ଜର୍ମାନୀରେ ଉଚ୍ଚଶିକ୍ଷା ସମାପ୍ତ କରିବା ପରେ ଅମ୍ବେଦକର ବମ୍ବେ ଫେରିଆସି ୧୯୨୩ ମସିହା ଜୁନ୍ ମାସରେ ବମ୍ବେ ହାଇକୋର୍ଟରେ ଆଡ଼ଭୋକେଟ ଭାବରେ ଯୋଗ ଦେଇଥିଲେ । ସେତେବେଳେ ଏହି ଉଦ୍ଦେଶ୍ୟରେ ଖଣ୍ଡେ ସନନ୍ଦ ଯୋଗାଡ଼ କରିବା ପାଇଁ ସୁଦ୍ଧା ତାଙ୍କ ପାଖରେ ଟଙ୍କା ନ ଥିଲା । ସଲିସିଟରମାନେ ହାଇକୋର୍ଟରେ ଆଡ଼ଭୋକେଟମାନଙ୍କୁ ମକଦ୍ଦମା ଯୋଗାଇ ଥାଆନ୍ତି । ମାତ୍ର ଅମ୍ବେଦକର ଅଚ୍ଛୁତ ଥିବା କାରଣରୁ ସଲିସିଟରମାନେ ତାଙ୍କ ପାଖ ମାଡ଼ୁ ନଥିଲେ । ତେଣୁ ମଫସଲରୁ ଯାହା କିଛି କାର୍ଯ୍ୟ ମିଳୁଥିଲା, ସେଥିରେ ହିଁ ସନ୍ତୁଷ୍ଟ ରହୁଥିଲେ । ନିଜର ଖଣ୍ଡେ ଅଫିସ ପାଇଁ ସୁଦ୍ଧା ତାଙ୍କୁ ସ୍ଥାନ ମିଳୁ ନଥିଲା; କିନ୍ତୁ ଶ୍ରମିକ ୟୁନିୟନ ନେତା ଏନ୍.ଏମ୍. ଯୋଶୀ ପାରେଲ ଅଞ୍ଚଳରେ ନିଜର ଗୋଟିଏ ଅଫିସ ଖୋଲିବା ପାଇଁ ଅମ୍ବେଦକରଙ୍କୁ ଅନେକ ସାହାଯ୍ୟ କରିଥିଲେ । ମଫସଲ ଅଞ୍ଚଳରୁ ଯାହା କିଛି କାର୍ଯ୍ୟ ମିଳୁଥିଲା, ସେଥିରୁ ଆୟ ଅତ୍ୟନ୍ତ ସାମାନ୍ୟ ଥିଲା । ଯାହାହେଉ, ଏହି ନିରୁତ୍ସାହଜନକ ପରିସ୍ଥିତି ମଧ୍ୟରେ ତାଙ୍କୁ କାର୍ଯ୍ୟ କରିବା ପାଇଁ ପଡ଼ୁଥିଲା । ଆଇନ୍ ବ୍ୟବସାୟରୁ ଆୟ ଅତି ସାମାନ୍ୟ ଥିବାରୁ ସେ ବଲ୍ଲି-ବୋଇ ଆକାଉଣ୍ଟାନସି ଇନ୍‌ଷ୍ଟିଚ୍ୟୁଟ୍‌ରେ ବାଣିଜ୍ୟିକ ଆଇନ୍ ଅଧ୍ୟାପନା କରିବା ପାଇଁ ଜଣେ ପାର୍ଟ ଟାଇମ୍ ପ୍ରଫେସର୍ ରୂପେ ଡିନିବର୍ଷ କାର୍ଯ୍ୟ କରିଥିଲେ । ବମ୍ବେ ବିଶ୍ୱବିଦ୍ୟାଳୟର ଜଣେ ପରୀକ୍ଷକ ରୂପେ ତାଙ୍କର କିଛି ଅଧିକା ଆୟ ମଧ୍ୟ ହେଉଥିଲା ।

———

# ବହିଷ୍କୃତ ହିତକାରିଣୀ ସଭା

ଅମ୍ବେଦକର ଇତି ମଧ୍ୟରେ କ୍ରମେ ଦଳିତ ବା ଅସ୍ପୃଶ୍ୟ-ମାନଙ୍କର ସମସ୍ୟା ସମ୍ପର୍କରେ ଅଧିକରୁ ଅଧିକ ଜଡ଼ିତ ହୋଇ ପଡ଼ୁଥିଲେ । ଅସ୍ପୃଶ୍ୟମାନଙ୍କ ପାଇଁ ସେ ଗୋଟିଏ ନୂତନ ପ୍ରତିଶବ୍ଦ ସୃଷ୍ଟି କରିଥିଲେ-ବହିଷ୍କୃତ; କାରଣ ଏମାନେ ପ୍ରକୃତରେ ଥିଲେ ସମାଜରୁ ବହିଷ୍କୃତ । ଏମାନଙ୍କର ସମସ୍ୟା ଓ ସଙ୍କଟର ବିଚାର ପାଇଁ ଅମ୍ବେଦକର ବମ୍ବେର ମାରେଲଠାରେ ଅବସ୍ଥିତ ଦାମୋଦର ହଲ୍‌ରେ ୧୯୨୪ ମସିହା ମାର୍ଚ୍ଚ ୯ ତାରିଖ ଦିନ ଏକ ସମ୍ମିଳନୀ ଆହ୍ୱାନ କରିଥିଲେ । ସମ୍ମିଳନୀର ବିଚାର ଓ ସିଦ୍ଧାନ୍ତ ଅନୁସାରେ ବହିଷ୍କୃତ ହିତକାରିଣୀ ସଭା ନାମରେ ଏକ ଅନୁଷ୍ଠାନ ଗଠିତ ହୋଇଥିଲା । ଅସ୍ପୃଶ୍ୟ ବା ବହିଷ୍କୃତମାନଙ୍କର ଅଭ୍ୟୁଥାନ ଓ ସର୍ବବିଧ କଲ୍ୟାଣ ସାଧନ ଏହି ଅନୁଷ୍ଠାନର ଲକ୍ଷ୍ୟ ଥିଲା । ୧୯୨୪ ମସିହା ଜୁଲାଇ ୨୦ ତାରିଖ ଦିନ ଏହି ଅନୁଷ୍ଠାନ ବିଧିବଦ୍ଧ ଭାବରେ ଗଠିତ ହୋଇଥିଲା । ସାର ଚିମନଲାଲ ସେତଲଭାଦ୍ ଏହାର ସଭାପତି ଓ ସ୍ୱୟଂ ଅମ୍ବେଦକର ଏହାର ପରିଚାଳନା କମିଟିର ଅଧ୍ୟକ୍ଷ ରହିଥିଲେ । ଡଃ ଆର୍.ପି. ପରାନ୍‌ଦପେ, କେ. ଏଫ୍. ନରିମେନ, ବି.ଜି. ଖେର ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନେ ଏହି ପରିଚାଳନା କମିଟିର ସଦସ୍ୟ ରହିଥିଲେ । ଅସ୍ପୃଶ୍ୟମାନଙ୍କ ମଧ୍ୟରେ ଶିକ୍ଷାର ବିସ୍ତାର, ସେମାନଙ୍କର ଅର୍ଥ-ନୈତିକ ଅବସ୍ଥାରେ ଉନ୍ନତି ଓ ସେମାନଙ୍କର ଅଭାବ ଅଭିଯୋଗ ବିଭିନ୍ନ ସ୍ତରରେ ଯଥାର୍ଥ ଭାବରେ ଉପସ୍ଥାପିତ କରିବା, ଏହି ସଭାର ଉଦ୍ଦେଶ୍ୟ ଥିଲା ।

ଏହି ସମୟରେ କୋଲ୍‌ହାପୁର ଦେଶୀୟ ରାଜ୍ୟରେ ତାଙ୍କୁ ମନ୍ତ୍ରୀ ହେବା ପାଇଁ ଆମନ୍ତ୍ରଣ କରା ଯାଇଥିଲା; ମାତ୍ର ସେ ତାହା ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ବମ୍ବେର ଏଲ୍‌ଫିନ୍‌ଷ୍ଟୋନ୍ କଲେଜରେ ତାଙ୍କୁ ପ୍ରଫେସର ଚାକିରି ମିଳିଲା; ମାତ୍ର ତାହାକୁ ସୁଦ୍ଧା ସେ ପ୍ରତ୍ୟାଖ୍ୟାନ କରିଦେଇଥିଲେ । କୌଣସି ଚାକିରିରେ ପଶିଲେ ତାଙ୍କର ସମାଜ ସେବା କାର୍ଯ୍ୟରେ ବାଧା ଉପୁଜିବ ବୋଲି ସେ କୌଣସି ଚାକିରି ଗ୍ରହଣ କରିବା ପାଇଁ ପ୍ରସ୍ତୁତ ନ ଥିଲେ ।

ଅମ୍ବେଦକର ଦେଖିଲେ, ଅସ୍ପୃଶ୍ୟମାନଙ୍କର ଦାବୀ ଉପସ୍ଥାପିତ କରିବା ପାଇଁ କୌଣସି ସମ୍ବାଦପତ୍ର ନାହିଁ । ଏହାର ଅଭାବ ସେ ଅତ୍ୟନ୍ତ ତୀବ୍ର ଭାବରେ ଅନୁଭବ କରୁଥିଲେ । ସେହି ଉଦ୍ଦେଶ୍ୟରେ ଅମ୍ବେଦକର ୧୯୨୭ ମସିହା ଅପ୍ରେଲ ୩ ତାରିଖ ଦିନ "ବହିଷ୍କୃତ ଭାରତ" ନାମରେ ଗୋଟିଏ ସମ୍ବାଦ-ପତ୍ରର ପ୍ରକାଶନ ଆରମ୍ଭ କଲେ । ଏହି ସମୟରେ ବମ୍ବେ ବିଧାନ-ସଭାରେ କେତେକ ସଂସ୍କାରମୂଳକ ପଦକ୍ଷେପ ଗ୍ରହଣ କରିବା ପାଇଁ ବମ୍ବେ ବିଧାନସଭାର ଜଣେ ସଭ୍ୟ ଏସ୍.କେ. ବୋଲ୍ ଏକ ପ୍ରସ୍ତାବ ଆଗତ କରିଥିଲେ । ଏହି ପ୍ରସ୍ତାବର ବିଷୟବସ୍ତୁ ଥିଲା ଯେ ଜାତି, ବର୍ଣ୍ଣ, ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତି ସ୍କୁଲ୍, ସାଧାରଣ ଜଳାଶୟ ଓ କୂପ ପ୍ରଭୃତି ଜନସାଧାରଣଙ୍କ ପାଇଁ ଉଦ୍ଦିଷ୍ଟ ସ୍ଥାନମାନଙ୍କୁ କେହି କୌଣସି ପ୍ରତିବନ୍ଧକ ସୃଷ୍ଟି କଲେ ତାହା ଦଣ୍ଡନୀୟ ହେବ । ମନ୍ଦିରମାନଙ୍କରେ ପ୍ରବେଶ କରିବା ପାଇଁ, ଅସ୍ପୃଶ୍ୟମାନଙ୍କୁ କୌଣସି ପ୍ରକାର ବାଧା ଦିଆଯିବ ନାହିଁ, ଇତ୍ୟାଦି । ଏହି ଉଦ୍ଦେଶ୍ୟରେ କୋଲାବା ଜିଲ୍ଲାର ମାହାଦଠାରେ ଅମ୍ବେଦକର ଏକ ସତ୍ୟାଗ୍ରହ ଆରମ୍ଭ କରିଥିଲେ । କିନ୍ତୁ ପରେ

ଏହି ସତ୍ୟାଗ୍ରହକୁ ପ୍ରତ୍ୟାହାର କରି ନିଆ ଯାଇଥିଲା । ୧୯୨୭ ମସିହାରେ ଅମ୍ବେଦକର ବମ୍ବେ ଲେଜିସ୍‌ଲେଟିଭ୍ କାଉନ୍‌ସିଲକୁ ମନୋନୀତ ହୋଇଗଲେ । ଅସ୍ପୃଶ୍ୟ ଜାତିର ଛାତ୍ରମାନଙ୍କ ପାଇଁ ଉଚ୍ଚଶିକ୍ଷା ସୁଲଭ କରିବାପାଇଁ ଅମ୍ବେଦକର ବରାବର ଚେଷ୍ଟିତ ଥିଲେ । ଉଚ୍ଚବର୍ଣ୍ଣର ଲୋକମାନଙ୍କ ସହିତ ନିମ୍ନବର୍ଣ୍ଣର ଲୋକମାନଙ୍କୁ ସମକକ୍ଷ କରାଇବା, ଅମ୍ବେଦକରଙ୍କ ଦୃଷ୍ଟିରେ ଥିଲା ସାମ୍ୟ ବା ସମତା । ସେଥିପାଇଁ କେବଳ ବ୍ରାହ୍ମଣମାନଙ୍କୁ ଶିକ୍ଷାଦାନ କ୍ଷେତ୍ରରେ ନିୟୋଜିତ କରାଯିବା ବିଧାନର ଅମ୍ବେଦକର ଘୋର ବିରୋଧୀ ଥିଲେ । ଏହି ଉଦ୍ଦେଶ୍ୟରେ ୧୯୨୮ ମସିହାରେ ବମ୍ବେ ହେରିଡ଼ିଟାରୀ ଅଫିସେସ୍ ଆକ୍ଟ, ୧୮୭୪ ଆଇନରେ ଏକ ସଂଶୋଧନ ଆଣି କେତେକ ବଂଶାନୁକ୍ରମିକ ପଦକୁ ବିଲୋପ କରିବାପାଇଁ ଏହି ଆଇନ୍‌ରେ ସେ ଏକ ସଂଶୋଧନ ପ୍ରସ୍ତାବ ବମ୍ବେ ଲେଜିସ୍‌ଲେଟିଭ କାଉନସିଲ୍‌ରେ ଆଗତ କରିଥିଲେ,

ହେଲେ ଅମ୍ବେଦକରଙ୍କ ସଂଶୋଧନ ପ୍ରସ୍ତାବଟି ଲେଜିସ୍‌ଲେଟିଭ୍ କାଉନସିଲରେ ଗୃହୀତ ହୋଇପାରି ନ ଥିଲା । ଏହି ସମୟରେ ଅମ୍ବେଦକର ବମ୍ବେର ସରକାରୀ ଆଇନ କଲେଜରେ ୧୯୨୮ ମସିହାରେ ଜଣେ ଅଧ୍ୟାପକରୂପେ ନିଯୁକ୍ତି ପାଇଲେ ।



# ଗୋଲ ଟେବୁଲ ସମ୍ମିଳନୀ

ଏତେବେଳକୁ ଦେଶରେ ଜାତୀୟ ଆନ୍ଦୋଳନ ଦିନକୁଦିନ ତୀବ୍ରରୁ ତୀବ୍ରତର ହୋଇ ଉଠିଥିଲା । ଏହି ପୃଷ୍ଠଭୂମିରେ ବିଲାତରୁ ସାଇମନ କମିଶନ ଆସିଥିଲେ, ଭାରତରେ ପ୍ରସ୍ତାବିତ ଶାସନ ସଂସ୍କାରର ରୂପରେଖ ସମ୍ପର୍କରେ ବିଲାତ ସରକାରଙ୍କୁ ରିପୋର୍ଟ ଦେବାପାଇଁ ; କିନ୍ତୁ ଏଇ କମିଶନରେ କୌଣସି ଭାରତୀୟ ସଭ୍ୟ ନଥିଲେ । ସମସ୍ତେ ଥିଲେ ଗୋରା ବ୍ରିଟିଶ । ସେଥିପାଇଁ ସାରା ଦେଶରେ ସାଇମନ କମିଶନକୁ ବର୍ଜ୍ୟକଟ କରିବା ପାଇଁ ଏକ ପ୍ରବଳ ଆନ୍ଦୋଳନ ମୁଣ୍ଡ-ଟେକି ଉଠିଥିଲା । କିନ୍ତୁ ବମ୍ବେରେ, ବମ୍ବେ ପ୍ରେସିଡେନ୍ସୀ କମିଟୀ ନାମରେ ଗୋଟିଏ କମିଟୀ ଗଠିତ ହୋଇ ସାଇମନ କମିଶନ ଆଗରେ ସାକ୍ଷ୍ୟ ଦେବାପାଇଁ କମିଟୀ ପକ୍ଷରୁ ସ୍ଥିର କରାଯାଇଥିଲା । ଅମ୍ବେଦକର ବମ୍ବେ ପ୍ରେସିଡେନ୍ସୀ କମିଟୀ ପକ୍ଷରୁ ସାଇମନ୍ କମିଶନ ଆଗରେ ସାକ୍ଷ୍ୟ ଦେଇ, ଅସ୍ପୃଶ୍ୟମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଦାବୀ କଲେ ।

ସାଇମନ କମିଶନର ସୁପାରିଶ ଅନୁସାରେ ୧୯୩୦ ମସିହା ନଭେମ୍ବର ମାସରେ ଲଣ୍ଡନଠାରେ ପ୍ରଥମ ଗୋଲ ଟେବୁଲ ସମ୍ମିଳନୀ ଆହୂତ ହେଲା । ଏହି ସମ୍ମିଳନୀକୁ ଦେଶର ବିଭିନ୍ନ ରାଜନୈତିକ ଦଳର ନେତୃବୃନ୍ଦ ଆମନ୍ତ୍ରିତ ହୋଇଥିଲେ । ଅସ୍ପୃଶ୍ୟମାନଙ୍କର ପ୍ରତିନିଧି ରୂପେ ଏଥିରେ ଯୋଗ ଦେବାପାଇଁ ଅମ୍ବେଦକର ଆମନ୍ତ୍ରିତ ହୋଇଥିଲେ । କିନ୍ତୁ ଭାରତୀୟ ଜାତୀୟ କଂଗ୍ରେସ ଏହି ସମ୍ମିଳନୀକୁ ବର୍ଜ୍ୟକଟ୍ କରିଥିଲେ । ଭାରତର

ଜାତୀୟ ଭାବାବେଗ ଆରମ୍ଭରୁ ଏହା ବିରୁଦ୍ଧରେ ପ୍ରକାଶ ପାଇ ଯାଉଥିଲା ।

ବସ୍ତୁତଃ ବିଲାତରେ ପ୍ରଥମ ଗୋଲ ଟେବୁଲ ସମ୍ମିଳନୀ ବସିବା ବେଳକୁ ୧୯୩୦-୩୧ ମସିହାରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ ଓ ଲବଣ ସତ୍ୟାଗ୍ରହରେ



ଭାରତ ଉଦ୍‌ବେଳିତ ହୋଇ ଉଠିଥିଲା । କିନ୍ତୁ ୧୯୩୧ ମସିହା ମେ ମାସରେ ମହାତ୍ମା ଗାନ୍ଧୀ ଓ ବଡ଼ଲାଟ ଉଇଲିଂଡନ୍‌ଙ୍କ ମଧ୍ୟରେ

ଏକ ଚୁକ୍ତି ସ୍ୱାକ୍ଷରିତ ହେବାରୁ ଅସହଯୋଗ ଆନ୍ଦୋଳନ ସମ୍ଭାଳା ପଡ଼ିଲା । ଏହା ଗାନ୍ଧୀ-ଇରୁଉଇନ୍ ଆକ୍ଟ ନାମରେ କଥିତ । ଏହି ଚୁକ୍ତି ଅନୁସାରେ ୧୯୩୧ ମସିହା ଡିସେମ୍ବର ମାସରେ ଲଣ୍ଡନଠାରେ ଅନୁଷ୍ଠିତ ହେବାକୁ ଥିବା ଦ୍ୱିତୀୟ ଗୋଲ-ଟେବୁଲ ସମ୍ମିଳନୀରେ ଯୋଗ ଦେବା ପାଇଁ କଂଗ୍ରେସ ସମ୍ମତି ପ୍ରକାଶ କରିଥିଲା । ଦ୍ୱିତୀୟ ଗୋଲ ଟେବୁଲ ସମ୍ମିଳନୀରେ ମହାତ୍ମାଗାନ୍ଧୀ, ପଣ୍ଡିତ ମଦନ ମୋହନ ମାଲବ୍ୟ ଓ ଶ୍ରୀମତୀ ସରୋଜିନୀ ନାଇଡ଼ୁ ଭାରତୀୟ ଜାତୀୟ କଂଗ୍ରେସର ପ୍ରତିନିଧି ରୂପେ



ଦ୍ୱିତୀୟ ଗୋଲ ଟେବୁଲ ସମ୍ମିଳନୀରେ ଯୋଗ ଦେଇଥିଲେ । ସମ୍ମିଳନୀର ମୁଖ୍ୟ ଆଲୋଚ୍ୟ ବିଷୟ ଥିଲା, ଭାରତରେ ସାଂପ୍ରଦାୟିକ ସମସ୍ୟା । ଅସ୍ପୃଶ୍ୟମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ମଧ୍ୟ ଏଥିରେ ଆଲୋଚ୍ୟ ବିଷୟ ସୂଚୀରେ ଅନ୍ତର୍ଭୁକ୍ତ ଥିଲା ।

ମହାତ୍ମା ଗାନ୍ଧୀ ମଧ୍ୟ ଅସ୍ପୃଶ୍ୟ ବା ହରିଜନମାନଙ୍କର ନେତା ଥିଲେ । କିନ୍ତୁ ଏଥିପାଇଁ ମହାତ୍ମାଜୀଙ୍କର ଦାବୀକୁ ଅମ୍ବେଦକର ସଂପୂର୍ଣ୍ଣ ବିରୋଧ କରିଥିଲେ । ତେଣୁ ଅସ୍ପୃଶ୍ୟମାନଙ୍କ

ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ସମ୍ପର୍କରେ କୌଣସି ସର୍ବସମ୍ମତ ସିଦ୍ଧାନ୍ତ ଏହି ସମ୍ମିଳନୀରେ ଗୃହୀତ ହୋଇପାରି ନଥିଲା । ଶେଷକୁ କୌଣସି ସ୍ପଷ୍ଟ ସିଦ୍ଧାନ୍ତ ନେଇ ନପାରି ଦ୍ୱିତୀୟ ଗୋଲ ଟେବୁଲ ସମ୍ମିଳନୀର ସମାପ୍ତି ଘଟିଲା ।

ମହାତ୍ମା ଗାନ୍ଧୀ ନିରାଶ ହୋଇ ଦ୍ୱିତୀୟ ଗୋଲ ଟେବୁଲ ସମ୍ମିଳନୀରୁ ଫେରିବା ପରେ ଦେଶରେ ପୁଣି ପ୍ରବଳ ଗଣ ଆନ୍ଦୋଳନର ସୂତ୍ରପାତ ହୋଇଗଲା । ଶହ ଶହ ସଂଖ୍ୟାରେ ସତ୍ୟାଗ୍ରହୀମାନେ ଗିରଫ ହେଲେ । ସେମାନଙ୍କ ଉପରେ ଅକଥନୀୟ ଦମନର ତାଣ୍ଡବଲୀଳା ମଧ୍ୟ ଚାଲିଲା । ଏହି ଆନ୍ଦୋଳନରେ ମହାତ୍ମା ଗାନ୍ଧୀ ମଧ୍ୟ ଗିରଫ ହୋଇଗଲେ ।

୧୯୩୨ ମସିହା ଅଗଷ୍ଟ ୩୦ରେ ପ୍ରକାଶ ପାଇଲେ ରାମ୍‌ସେ ମାକ୍‌ଡୋନାଲଡ୍‌ଙ୍କ କମ୍ୟୁନାଲ ଆୱାର୍ଡ । ଏଥିରେ ଅସ୍ପୃଶ୍ୟ-ମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀର ବ୍ୟବସ୍ଥାକୁ ସ୍ୱୀକୃତ ଦିଆ ଯାଇଥିଲା । ଅସ୍ପୃଶ୍ୟ ବା ହରିଜନମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀର ବ୍ୟବସ୍ଥାକୁ ଗାନ୍ଧିଜୀ ଘୋର ବିରୋଧ କରୁଥିଲେ; କାରଣ ତାଙ୍କ ମତରେ ଭାରତରେ ଏହା ହିନ୍ଦୁ ସମାଜକୁ ବିଭାଜିତ କରିଦେବା ସୁନିଶ୍ଚିତ ଥିଲା । ଗାନ୍ଧିଜୀ ତେଣୁ ଏହି ବ୍ୟବସ୍ଥାକୁ ବାତିଲ କରିବାପାଇଁ ଆମରଣ ଅନଶନ ଆରମ୍ଭ କରିଥିଲେ । ଗାନ୍ଧିଜୀଙ୍କର ଆମରଣ ଅନଶନ ସାରା ଦେଶରେ ଗଭୀର ଆଲୋଡ଼ନ ସୃଷ୍ଟି କରିଦେଲା । କିନ୍ତୁ ଅମ୍ବେଦକର ହରିଜନମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଦାବୀରେ ଅଟଳ ରହିଥିଲେ । ଏହି ପରିସ୍ଥିତିରେ ସାପ୍ରୁ, ଜୟକାର ଓ ମାଲବ୍ୟ ପ୍ରମୁଖ ଏଥିର ଗୋଟାଏ ଆପୋଷ ମୀମାଂସା କରି ଗାନ୍ଧିଜୀଙ୍କ

ଆମରଣ ଅନଶନ ପ୍ରତ୍ୟାହାର ପାଇଁ ଉଦ୍ୟମ କରିଥିଲେ । ଏମାନଙ୍କ ମଧ୍ୟସ୍ଥତା ଫଳରେ ହରିଜନମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ପରିବର୍ତ୍ତେ ଯୁଗ୍ମ ନିର୍ବାଚନ ମଣ୍ଡଳୀର ବ୍ୟବସ୍ଥା ହେଲା ଓ କେତେକ ଯୁଗ୍ମ ନିର୍ବାଚନ ମଣ୍ଡଳୀରୁ ହରିଜନମାନଙ୍କ ପାଇଁ ବ୍ୟବସ୍ଥା ରହିଲା । ଏହି ଭିତ୍ତିରେ ୧୯୨୪ ମସିହା ସେପ୍ଟେମ୍ବର ୨୪ ତାରିଖ ଦିନ ଅମ୍ବେଦକର ଗାନ୍ଧିଜୀଙ୍କ ସହିତ ଏକ ଚୁକ୍ତି ସ୍ୱାକ୍ଷର କଲେ । ଏହା ପୁଣେ ଚୁକ୍ତି ନାମରେ ପ୍ରସିଦ୍ଧ । ଏହି ଚୁକ୍ତି ଅନୁସାରେ ଅମ୍ବେଦକର ରାମସେ ମାକ୍‌ଡୋନାଲଡ୍‌ଙ୍କ କମ୍ୟୁନାଲ ଆଓ୍ୱାର୍ଡ଼ରେ ବ୍ୟବସ୍ଥା ହୋଇଥିବା, ହରିଜନମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଗଠନ ପରିହାର କରି, ଯୁଗ୍ମ ନିର୍ବାଚନ ମଣ୍ଡଳୀ ମାଧ୍ୟମରେ ହରିଜନମାନଙ୍କର ପ୍ରତିନିଧିତ୍ୱର ବ୍ୟବସ୍ଥାକୁ ଅନୁମୋଦନ ଜଣାଇଲେ । ହରିଜନମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ବ୍ୟବସ୍ଥା କରି, ବ୍ରିଟିଶ ସରକାର ଦେଶ ତଥା ସମାଜକୁ ଆହୁରି ବିଭାଜିତ କରିବା ପାଇଁ ଯେଉଁ ଅପଚେଷ୍ଟା ଚଳାଇ ଥିଲେ, ଗାନ୍ଧିଜୀଙ୍କ ସଂଗ୍ରାମ ଓ ଅମ୍ବେଦକରଙ୍କ ଦୂର-ଦୃଷ୍ଟି ଫଳରେ ତାହା ପଣ୍ଡ ହୋଇଗଲା । ୧୯୩୨-୩୪ ମସିହାରେ ଭାରତରେ ଶାସନ ସଂସ୍କାର ପାଇଁ ଯେଉଁ ଜଏଣ୍ଟ ପାର୍ଲିଆମେଣ୍ଟାରୀ କମିଟି ଗଠିତ ହୋଇଥିଲା, ଅମ୍ବେଦକର ସେଥିରେ ଜଣେ ସଭ୍ୟ ରୂପେ ମନୋନୀତ ହୋଇଥିଲେ । ଏହି ସମୟରେ ଲଣ୍ଡନ ଠାରେ ଅନୁଷ୍ଠିତ ହୋଇଥିବା ତୃତୀୟ ଟେବୁଲ ସମ୍ମିଳନୀରେ ଅମ୍ବେଦକର ଜଣେ ସଭ୍ୟ ରୂପେ ମଧ୍ୟ ଯୋଗ ଦେଇଥିଲେ । ଏତେବେଳକୁ ଅମ୍ବେଦକର ଜଣେ ଜାତୀୟ ନେତା ରୂପେ ପ୍ରତିଷ୍ଠା ଲାଭ କରି ସାରିଥିଲେ ।

---

# ସମ୍ବିଧାନର ନିର୍ମାତା ଅମ୍ବେଦକର

ପୂର୍ବେ କୁହାଯାଇଅଛି, ୧୯୩୨-୩୪ ମସିହାରେ ଭାରତରେ ନୂତନ ଶାସନ ସଂସ୍କାର ପ୍ରବର୍ତ୍ତନ ଉଦ୍ଦେଶ୍ୟରେ ବିଲାତରେ ଗୋଟିଏ ଜଏଣ୍ଟ ପାର୍ଲିଆମେଣ୍ଟାରୀ କମିଟୀ ଗଠିତ ହୋଇଥିଲା । ଅମ୍ବେଦକର ଏହି କମିଟୀରେ ଜଣେ ସଭ୍ୟ ଥିଲେ ।



ଜଏଣ୍ଟ ପାର୍ଲିଆମେଣ୍ଟାରୀ କମିଟୀରେ ବିସ୍ତୃତ ଆଲୋଚନା ପରେ ୧୯୩୫ ମସିହାରେ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ ପ୍ରସ୍ତୁତ ହୋଇଥିଲା । ଏହି ଆଇନ୍ ଅନୁସାରେ ଭାରତର ସବୁ ପ୍ରଦେଶରେ ବିଧାନସଭା ପାଇଁ ନିର୍ବାଚନ ହେଲା । ଏ ପର୍ଯ୍ୟନ୍ତ ବମ୍ବେ ବିଧାନସଭାରେ ଅମ୍ବେଦକର ସରକାରଙ୍କ ପକ୍ଷରୁ ଜଣେ ମନୋନୀତ ସଭ୍ୟରୂପେ ବମ୍ବେ ବିଧାନସଭାରେ ରହି ଆସିଥିଲେ । କିନ୍ତୁ

୧୯୩୫ ମସିହା ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ ଅନୁସାରେ ସାଧାରଣ ନିର୍ବାଚନରେ ଅଂଶ ଗ୍ରହଣ କରିବା ପାଇଁ ସେ ଇଣ୍ଡିପେଣ୍ଡେଣ୍ଟ ଲେବର ପାର୍ଟି ନାମରେ ଗୋଟିଏ ରାଜନୈତିକ ଦଳ ଗଠନ କଲେ । ଅସ୍ପୃଶ୍ୟ ଓ ଦଳିତମାନେ ସାଧାରଣତଃ ଶ୍ରମିକ ସମାଜର ହୋଇଥିବାରୁ ସେମାନଙ୍କର ସ୍ୱାର୍ଥରକ୍ଷା ଏହି ଦଳର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ବମ୍ବେ ବିଧାନସଭାପାଇଁ ଏହି ଦଳ ପକ୍ଷରୁ ୧୭ ଗୋଟି ଆସନ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରି ୧୫ ଗୋଟି ଆସନରେ ଏହି ଦଳ ବିଜୟୀ ହୋଇ ପାରିଥିଲା । କଂଗ୍ରେସ ଦଳ ସାରା ଭାରତରେ ୧୫ ଗୋଟି ପ୍ରଦେଶ ମଧ୍ୟରୁ ୮ ଗୋଟି ପ୍ରଦେଶରେ ବିପୁଳ ସଂଖ୍ୟାଧିକ ଭୋଟରେ ଜୟଲାଭ କରି ପାରିଥିଲା । ବମ୍ବେ ପ୍ରଦେଶରେ ମଧ୍ୟ କଂଗ୍ରେସ ସରକାର ଗଠନ କଲା । ତେଣୁ ଅମ୍ବେଦକର ବିରୋଧୀ ଦଳରେ ବସିଲେ ।

୧୯୩୮ ମସିହାରେ ବମ୍ବେ ବିଧାନସଭାରେ ଅସ୍ପୃଶ୍ୟମାନଙ୍କ ପାଇଁ ଅସ୍ପୃଶ୍ୟ ପରିବର୍ତ୍ତେ ହରିଜନ ଶବ୍ଦ ବ୍ୟବହାର କରିବା ପାଇଁ କଂଗ୍ରେସ ଦଳ ପକ୍ଷରୁ ଏକ ବିଲ୍ ଆଗତ ହେଲା । ଅମ୍ବେଦକର କିନ୍ତୁ ଏ ବିଲ୍‌ର ତୀବ୍ର ସମାଲୋଚନା କରିଥିଲେ । ତାଙ୍କର ବକ୍ତବ୍ୟ ଥିଲା, ଅସ୍ପୃଶ୍ୟମାନଙ୍କୁ ଖାଲି ହରିଜନ କହି-ଦେଲେ ସେମାନଙ୍କର ଅବସ୍ଥା ସୁଧୁରି ଯିବନାହିଁ । ହରିଜନ-ମାନଙ୍କର ଅଭ୍ୟୁତ୍ଥାନ ପାଇଁ ନିର୍ଦ୍ଦିଷ୍ଟ କର୍ମ ଯୋଜନା ଆବଶ୍ୟକ ।

ଗାନ୍ଧିଜୀ ଅବଶ୍ୟ ପ୍ରଥମେ ଅସ୍ପୃଶ୍ୟମାନଙ୍କ ଉଦ୍ଦେଶ୍ୟରେ ହରିଜନ ଶବ୍ଦ ବ୍ୟବହାର କରିଥିଲେ । ଅସ୍ପୃଶ୍ୟମାନେ ମଧ୍ୟ ଈଶ୍ୱରଙ୍କ ସନ୍ତାନ ; ଏହି ସାମ୍ୟ ଭାବନା ହିନ୍ଦୁ ସମାଜରେ ପ୍ରତିଷ୍ଠିତ କରିବା ପାଇଁ ଗାନ୍ଧିଜୀ ଅସ୍ପୃଶ୍ୟ ପରିବର୍ତ୍ତେ ହରିଜନ ଶବ୍ଦ ବ୍ୟବହାର କରୁଥିଲେ । ସମାଜରୁ ଅସ୍ପୃଶ୍ୟତା

ଦୂରୀକରଣ ଦଗରେ ଗାନ୍ଧିଜୀଙ୍କର ହରିଜନ ଆନ୍ଦୋଳନ ବହୁ ପରିମାଣରେ ଯେ ସଫଳ ହୋଇଥିଲା, ସେଥିରେ ସନ୍ଦେହ ନାହିଁ । କିନ୍ତୁ ସେଥିପାଇଁ ଗୋଟାଏ ଆଇନ୍ କରି ଅସ୍ପୃଶ୍ୟମାନଙ୍କ ପାଇଁ ହରିଜନ ଶବ୍ଦ ବ୍ୟବହାର କରିବାରେ ଅମ୍ବେଦକରଙ୍କର ଥିଲା ମୌଳିକ ଆପତ୍ତି । ଏହି ନାମ ପରିବର୍ତ୍ତନ ଦ୍ୱାରା ଅସ୍ପୃଶ୍ୟ-ମାନଙ୍କର ମୂଳ ସମସ୍ୟା ସମାଧାନ ହୋଇପାରିବ ନାହିଁ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ରହିଥିଲା ।

୧୯୪୨ ମସିହା ଜୁଲାଇ ମାସରେ ଅମ୍ବେଦକର ବଡ଼ଲାଟଙ୍କର ମନ୍ତ୍ରୀସଭାରେ ଶ୍ରମ ମନ୍ତ୍ରୀ ରୂପେ ନିଯୁକ୍ତି ପାଇଲେ । ଜାତୀୟତାବାଦୀମାନଙ୍କର ତୀବ୍ର ସମାଲୋଚନା ସତ୍ତ୍ୱେ ୧୯୪୬ ମସିହା ଜୁଲାଇ ମାସ ପର୍ଯ୍ୟନ୍ତ ଅମ୍ବେଦକର ଏହି ପଦବୀରେ ଅଧିଷ୍ଠିତ ରହିଥିଲେ । କଂଗ୍ରେସ ଆହ୍ୱାନରେ ସାରା ଦେଶ ଅଗ୍ନି-ଗର୍ଭ ହୋଇ ଉଠିଥିବାବେଳେ ଅମ୍ବେଦକର ବଡ଼ଲାଟଙ୍କର ମନ୍ତ୍ରୀସଭାରେ ଜଣେ ମନ୍ତ୍ରୀରୂପେ ଅଧିଷ୍ଠିତ ରହିଥିବା, ଜାତୀୟତାବାଦୀମାନେ ସୁଦୃଷ୍ଟିରେ ଦେଖୁ ନ ଥିଲେ । କିନ୍ତୁ ଅସ୍ପୃଶ୍ୟ ସମାଜର ଅଭ୍ୟୁତ୍ଥାନ ଅମ୍ବେଦକରଙ୍କର ଏକମାତ୍ର ଲକ୍ଷ୍ୟ ଥିବାରୁ ସେ ଭାରତଛାଡ଼ ଆନ୍ଦୋଳନରେ ନିଜକୁ ଦୂରେଇ ରଖିଥିଲେ ।

ନିକଟ ଭବିଷ୍ୟତରେ ବ୍ରିଟିଶ ବିଭିନ୍ନ କାରଣରୁ ଯେ ଭାରତ ଛାଡ଼ି ଯିବେ, ସେଥିରେ ଆଉ କାହାରି ସନ୍ଦେହ ନ ଥିଲା । ବ୍ରିଟିଶ ଭାରତ ଛାଡ଼ି ଯିବାପରେ ଅସ୍ପୃଶ୍ୟମାନଙ୍କ ପାଇଁ ସାମ୍ବିଧାନିକ ନିରାପତ୍ତା ଯେପରି ସୁରକ୍ଷିତ ରହିପାରିବ, ସେଇ ଉଦ୍ଦେଶ୍ୟରେ ୧୯୪୬ ମସିହା ସେପ୍ଟେମ୍ବର ମାସରେ

ଅମ୍ବେଦକର ଇଂଲଣ୍ଡ ଯାତ୍ରା କରିଥିଲେ । ଇତି ମଧ୍ୟରେ କ୍ୟାବିନେଟ ମିଶନ ଭାରତର ସ୍ୱାଧୀନତା ପ୍ରାପ୍ତି ସମ୍ପର୍କରେ ଯେଉଁ ପ୍ରସ୍ତାବ ଦେଇଥିଲେ, ସେଥିରେ ହରିଜନମାନଙ୍କର ସ୍ୱାର୍ଥରକ୍ଷା ପାଇଁ କୌଣସି ବ୍ୟବସ୍ଥା ନ ଥିଲା । ୧୯୪୭ ମସିହା ସେପ୍ଟେମ୍ବର ମାସରେ ତାହାକୁ ସୁଧାରିବା ଉଦ୍ଦେଶ୍ୟରେ କେବଳ ଅମ୍ବେଦକର ଇଂଲଣ୍ଡ ଯାତ୍ରା କରିଥିଲେ । କ୍ୟାବିନେଟ୍ ମିଶନ ଅସ୍ପୃଶ୍ୟମାନଙ୍କ ପ୍ରତି ଯେଉଁ ଅବିଚାର କରିଥିଲେ, ତାହାର ପ୍ରତିବିଧାନ ହିଁ ଅମ୍ବେଦକରଙ୍କ ଇଂଲଣ୍ଡ ଯାତ୍ରାର ଏକମାତ୍ର ଲକ୍ଷ୍ୟଥିଲା ।

ଏହି ସମୟରେ ଶାସନ ବିଧାୟକ ସଭାପାଇଁ, ଆସନ୍ନ ନିର୍ବାଚନ ପାଇଁ ସାରା ଦେଶରେ ପ୍ରବଳ ଆଲୋଡ଼ନ ଆରମ୍ଭ ହୋଇ ଯାଇଥିଲା । ଏହି ଶାସନ ବିଧାୟକ ସଭାରେ ସ୍ୱାଧୀନ ଭାରତ ପାଇଁ ସମ୍ବିଧାନ ପ୍ରସ୍ତୁତ କରାଯିବ । ସେଥିପାଇଁ ଏହି ନିର୍ବାଚନ ଦେଶରେ ଏକ ଆଲୋଡ଼ନ ସୃଷ୍ଟି କରିବା ସ୍ୱାଭାବିକ ଥିଲା । ଅମ୍ବେଦକର ସ୍ୱାଭାବିକ ଭାବରେ ଏଥି ସହିତ ଜଡ଼ିତ ହୋଇ ପଡ଼ିଥିଲେ । ତଥାପି ନିର୍ବାଚନରେ ସବୁ ଉତ୍ତେଜନା ମଧ୍ୟରେ ଭାରତୀୟ ହିନ୍ଦୁ ସମାଜରେ ଚତୁର୍ଥ ବର୍ଣ୍ଣ ରୂପେ ଶୂଦ୍ର-ମାନଙ୍କର କିପରି ଉତ୍ପତ୍ତି ଘଟିଲା, ସେ ସମ୍ପର୍କରେ ସେ ଏକ ପାଣ୍ଡିତ୍ୟ ପୂର୍ଣ୍ଣ ସନ୍ଦର୍ଭ ପ୍ରକାଶ କରିଥିଲେ । ଏହାର ଶିରୋନାମା ଥିଲା Who were the Shudras ?

୧୯୪୭ ମସିହା ନଭେମ୍ବର ମାସରେ ବଙ୍ଗଳାରୁ ଅମ୍ବେଦକର ଶାସନ ବିଧାୟକ ସଭାକୁ ନିର୍ବାଚିତ ହୋଇଥିଲେ । ଶାସନ ବିଧାୟକ ସଭାରେ ତାଙ୍କର ପ୍ରଥମ ଭାଗରେ ସେ ଅବିଭକ୍ତ ଭାରତ ପାଇଁ ଦାବୀ କରିଥିଲେ । ତା'ପର ବର୍ଷ ସମ୍ବିଧାନ ରଚା

ପ୍ରସ୍ତୁତ କରିବା ପାଇଁ ଶାସନ ବିଧାୟକ ସଭା ଯେଉଁ କମିଟି ନିଯୁକ୍ତ କରିଥିଲେ ସେଥିରେ ଜଣେ ସଭ୍ୟ ରୂପେ ସେ ମନୋନୀତ ହୋଇଥିଲେ । ପରେ କମିଟି ଅମ୍ବେଦକରଙ୍କୁ ଏହାର ଅଧ୍ୟକ୍ଷରୂପେ ନିର୍ବାଚିତ କରିଥିଲେ । ସମ୍ବିଧାନର ଚିଠା ପ୍ରସ୍ତୁତକାରୀ କମିଟିର ଅଧ୍ୟକ୍ଷ ରୂପେ ସେ ଭାରତର ଚିଠା ସମ୍ବିଧାନ ଶାସନ ବିଧାୟକ ସଭାରେ ଉପସ୍ଥାପିତ କରିଥିଲେ ଓ ବିଭିନ୍ନ ସ୍ତରରେ ଏହାର ଆଲୋଚନାରେ ଅଂଶ ଗ୍ରହଣ କରି ଚିଠା ସମ୍ବିଧାନକୁ ଗୃହୀତ କରାଇ ନେଇଥିଲେ । ଆଇନ କ୍ଷେତ୍ରରେ ତାଙ୍କର ତୀକ୍ଷ୍ଣ ଧୀମତ୍ତା ଓ ସମ୍ବିଧାନିକ ସମସ୍ୟାବଳୀ ସମ୍ପର୍କରେ ତାଙ୍କର ଗଭୀର ଅନୁଶୀଳନ ପାଇଁ ଶାସନ ବିଧାୟକ ସଭାରେ ତାଙ୍କ ପ୍ରତି ଭୂରି ଭୂରି ପ୍ରଶଂସା ଜ୍ଞାପନ କରାଯାଇଥିଲା ଓ ତାଙ୍କୁ ଭାରତୀୟ ସମ୍ବିଧାନର ପ୍ରଣେତା ରୂପେ ସ୍ୱୀକୃତ ମଧ୍ୟ ଦିଆଯାଇଥିଲା । ସେଦିନ ମଧ୍ୟ ଭାରତର ମାଓଗ୍ରାମର ପ୍ରାଥମିକ ବିଦ୍ୟାଳୟରେ ଭୀମରାଓ ରାମଜୀ ଅମ୍ବେଦକର ନାମକ ଯେଉଁ ଛାତ୍ରଟି ବିଦ୍ୟାଳୟ ମଧ୍ୟରେ ପ୍ରବେଶର ଅଧିକାରରୁ ବଞ୍ଚିତ ହୋଇ ସ୍କୁଲ ବାହାରେ ବସି ପାଠ ପଢ଼ୁଥିଲା, ସେ ନିଜର ପ୍ରତିଭା ଓ ଅଧ୍ୟବସାୟ ବଳରେ କେବଳ ଭାରତୀୟ ସମ୍ବିଧାନର ନିର୍ମାତା ରୂପେ ସର୍ବମାନ୍ୟ ହୋଇ ପାରିଥିଲା ।

ସ୍ୱାଧୀନ ଭାରତର ପ୍ରଥମ ମନ୍ତ୍ରୀମଣ୍ଡଳରେ ଅମ୍ବେଦକର ଆଇନମନ୍ତ୍ରୀ ରୂପେ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁଙ୍କ ଦ୍ୱାରା ମନୋନୀତ ହୋଇଥିଲେ । କିନ୍ତୁ କାଶ୍ମୀର ସମସ୍ୟା, ଭାରତର ବୈଦେଶିକ ନୀତି ଓ ହିନ୍ଦୁକୋଡ଼ ବିଲ୍ ସମ୍ପର୍କରେ ପ୍ରଧାନମନ୍ତ୍ରୀ ନେହେରୁଙ୍କ ସହିତ ତାଙ୍କର ମତାନ୍ତର

ଘଟିଲା । ଏହି କାରଣରୁ ୧୯୫୧ ମସିହା ସେପ୍‌ଟେମ୍ବର ମାସରେ ଅମ୍ବେଦକର ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେଇଦେଲେ । କିନ୍ତୁ ତା'



ପରବର୍ଷ ୧୯୫୨ ମସିହା ମାର୍ଚ୍ଚ ମାସରେ ସେ ରାଜ୍ୟସଭା ବା କାଉନ୍‌ସିଲ୍ ଅଫ୍ ଷ୍ଟେଟ୍‌ସ୍‌କୁ ନିର୍ବାଚିତ ହୋଇଥିଲେ ।

ପ୍ରସଙ୍ଗତଃ ଏହି ବର୍ଷ ମାର୍ଚ୍ଚ ମାସରେ ଏହି ଲେଖକ ମଧ୍ଯ କାଉନ୍‌ସିଲ୍ ଅଫ୍ ଷ୍ଟେଟ୍‌ସ୍‌କୁ ନିର୍ବାଚିତ ହୋଇଥିଲା । ସେଇ ଅବକାଶରେ, ସେହି ଐତିହାସିକ ଜନନେତାଙ୍କ ସହିତ ଘଟିଥିଲା ପ୍ରଥମ ପରିଚୟର ସୌଭାଗ୍ୟ ।

※

# ଅମ୍ବେଦକର ଓ ବୌଦ୍ଧଧର୍ମ

୧୯୩୫ ମସିହା ୧୩ ତାରିଖ ଅକ୍ଟୋବରରେ ନାସିକ୍ ଜିଲ୍ଲାରେ ଅସ୍ପୃଶ୍ୟ ଜାତିମାନଙ୍କର ଏକ ପ୍ରାଦେଶିକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଅମ୍ବେଦକର ଥିଲେ ଏହି ସମ୍ମିଳନୀର ସଭାପତି । ଏହି ସମ୍ମିଳନୀରେ ଅମ୍ବେଦକର ସଭାପତିଙ୍କ ଅଭିଭାଷଣ ପ୍ରସଙ୍ଗରେ ସେ ହିନ୍ଦୁଧର୍ମ ଛାଡ଼ିବାପାଇଁ ନିଷ୍ପତ୍ତି କରିଥିବା ଘୋଷଣା କରି କହିଥିଲେ-"ମୁଁ ହିନ୍ଦୁ ହୋଇ ଜନ୍ମିଥିଲି କିନ୍ତୁ ହିନ୍ଦୁ ହୋଇ ମୁଁ ମରିବି ନାହିଁ" -ଏହା ଥିଲା ତାଙ୍କର ଚୂଡ଼ାନ୍ତ ନିଷ୍ପତ୍ତି । ଅସ୍ପୃଶ୍ୟମାନେ ହିନ୍ଦୁ ସମାଜରେ ଯେପରି ଭାବରେ ଲାଞ୍ଛିତ ଓ ନିପୀଡ଼ିତ ହେଉଥିଲେ; ଏହା ଥିଲା ସେପରି ତାହାର ଚୂଡ଼ାନ୍ତ ବିସ୍ଫୋରକ । ସମ୍ମିଳନୀରେ ଉପସ୍ଥିତ ଥିବା, ଅମ୍ବେଦକରଙ୍କ ହଜାର ହଜାର ଅନୁଗାମୀ ତାଙ୍କର ଏ ନିଷ୍ପତ୍ତିକୁ ସ୍ୱାଗତ କରିଥିଲେ ।

ଅମ୍ବେଦକର କିନ୍ତୁ ଆଦୌ ହିନ୍ଦୁ ବିଦ୍ୱେଷୀ ନ ଥିଲେ । କିମ୍ବା ସେ ପ୍ରକାର ପରିବେଶରେ ମଧ୍ୟ ସେ ବଢ଼ି ନ ଥିଲେ । ତାଙ୍କର ପିତା ରାମଜୀ କବୀରପନ୍ଥୀ ଥିଲେ । ଉଭୟ ଶ୍ରୀକୃଷ୍ଣ ଓ ଶ୍ରୀରାମ କବୀରଙ୍କର ଆରାଧ୍ୟ ଦେବତା ଥିଲେ । ଶ୍ରୀକୃଷ୍ଣ ଓ ଶ୍ରୀରାମଙ୍କର ଉଦ୍ଦେଶ୍ୟରେ କବୀରଙ୍କର ବହୁ ଭଜନ ଏବେ ସୁଦ୍ଧା କବୀରପନ୍ଥୀ ସମାଜରେ ଆବେଗର ସହିତ ଗାନ କରାଯାଉଥାଏ । ସନ୍ଥ କବୀରଙ୍କର ଅନେକ ମୁସଲମାନ ଭକ୍ତମଧ୍ୟ ଥିଲେ । କବୀର ଜାତି ପ୍ରଥାରେ ବିଶ୍ୱାସ କରୁ ନ ଥିଲେ । ସେ ଥିଲେ ବିରୋଧୀ ।

ତାଙ୍କ ପ୍ରଚାରିତ ଭକ୍ତି ଧର୍ମରେ ମନୁଷ୍ୟ ମାତ୍ରେଇ ଥିଲେ ସମାନ । ଅମ୍ବେଦକରଙ୍କର ମାନସିକତା ଉପରେ ଭକ୍ତିଧର୍ମର ପ୍ରଭାବ ଯେ ପଡ଼ି ନଥିଲା ତା' ନୁହେ ସେଥିପାଇଁ ହିନ୍ଦୁ ଆଧ୍ୟାତ୍ମିକ ପରିବେଶ ମଧ୍ୟରେ ସେ ବଢ଼ିଥିଲେ । କିନ୍ତୁ ଅସ୍ପୃଶ୍ୟମାନଙ୍କ ପ୍ରତି ସନାତନ ପନ୍ଥୀ ହିନ୍ଦୁ ସମାଜର ଲାଞ୍ଛନା, ଅନାଦର ଓ ନିପୀଡ଼ନ ତାଙ୍କୁ ହିନ୍ଦୁଧର୍ମ ପ୍ରତି ବୀତସ୍ପୃହ କରି ଦେଇଥିବା ହିଁ ସ୍ୱାଭାବିକ । ପୂର୍ବେ ପୁଣି କୁହାଯାଇ ଅଛି, ଏକଦା ଛାତ୍ରାବସ୍ଥାରେ ସଂସ୍କୃତ ଭାଷା ଶିକ୍ଷା କରିବା ପାଇଁ, ତାଙ୍କର ପ୍ରବଳ ଆଗ୍ରହ ରହିଥିଲା । କିନ୍ତୁ ଜଣେ ଅସ୍ପୃଶ୍ୟକୁ 'ବେଦଭାଷା' ରୂପେ ବିବେଚିତ ହେଉଥିବା ସଂସ୍କୃତ ଭାଷା ପଢ଼ାଇବା ପାଇଁ କୌଣସି ସଂସ୍କୃତ ପଣ୍ଡିତ ରାଜି ନହେବାରୁ ସେ ବାଧ୍ୟ ହୋଇ ଦ୍ୱିତୀୟ ଭାଷାରୂପେ ପାର୍ସୀ ଅଧ୍ୟୟନ କରିଥିଲେ । ତେଣୁ ହିନ୍ଦୁଧର୍ମ ପ୍ରତି ତାଙ୍କର ବିଦ୍ୱେଷ ନ ଥିଲା । ବରଂ ହିନ୍ଦୁମାନେ ତାଙ୍କପରି ଜଣେ ମନୀଷୀଙ୍କୁ ହିନ୍ଦୁଧର୍ମରୁ ବିତାଡ଼ିତ କରି ଦେଇଥିଲେ ।

ନାସିକ୍ ଜିଲ୍ଲାର ଇଓଲା ସମ୍ମିଳନୀରେ ସେ ହିନ୍ଦୁ ଭାବରେ ମରିବେ ନାହିଁ ବୋଲି ଘୋଷଣା କରିବା ସତ୍ତ୍ୱେ ହିନ୍ଦୁଧର୍ମ ପରିବର୍ତ୍ତେ ସେ ଅନ୍ୟ କେଉଁ ଧର୍ମ ଗ୍ରହଣ କରିବେ, ସେ ତାହାର କୌଣସି ସୂଚନା ଦେଇନଥିଲେ ।

୧୯୩୬ ମସିହା ଇଷ୍ଟର ଛୁଟିବେଳେ ଲାହୋରଠାରେ ଜାତ୍ ପାତ୍—ତୋଡ଼କ ମଣ୍ଡଳର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେଲା । ଏହି ଅଧିବେଶନରେ ମଧ୍ୟ ସଭାପତି ରୂପେ ଅମ୍ବେଦକରଙ୍କ ଅଭିଭାଷଣରେ ହିନ୍ଦୁଧର୍ମ ପରିହାର କରିବା ସମ୍ପର୍କରେ ତାଙ୍କର ଘୋଷଣା ସୂଚିତ ହୋଇଥିବାରୁ, ଅଧିବେଶନରେ ଉପସ୍ଥିତ

ଥିବା, ଅଧିକାଂଶ ପ୍ରତିନିଧି ସେଥି ସହିତ ଏକମତ ହୋଇପାରି ନ ଥିଲେ । ତେଣୁ ସେଠାରେ ସେ ତାଙ୍କର ଅଭିଭାଷଣ ପାଠ କରି ନ ଥିଲେ । କିନ୍ତୁ ସେଇ ବର୍ଷ ମେ ମାସରେ ବମ୍ବେଠାରେ ମାହାର-ମାନଙ୍କର ଯେଉଁ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା, ସେହି ଅଧିବେଶନରେ ସେ ହିନ୍ଦୁଧର୍ମ ପରିହାର କରିବା ପାଇଁ ଆହ୍ୱାନ ଜଣାଇ ଥିଲେ ।

ଅମ୍ବେଦକର ଆରମ୍ଭରୁ ବୌଦ୍ଧଧର୍ମ ପ୍ରତି ଆକୃଷ୍ଟ ଥିଲେ । ବୌଦ୍ଧଧର୍ମରେ ଜାତିଭେଦ ନ ଥିଲା । ଗୌତମ ବୁଦ୍ଧଙ୍କର ପ୍ରଚାରିତ ବାଣୀ ଅନୁସାରେ ନିର୍ବାଣ ସାଧନାପାଇଁ ସ୍ପୃଶ୍ୟ, ଅସ୍ପୃଶ୍ୟ ନିର୍ବିଶେଷରେ ସମସ୍ତଙ୍କର ସମାନ ଅଧିକାର ରହିଥିଲା । ବୌଦ୍ଧଧର୍ମର ଏହି ସାମ୍ୟ ଭାବନା ଅମ୍ବେଦକରଙ୍କୁ ବୌଦ୍ଧଧର୍ମ ପ୍ରତି ଆରମ୍ଭରୁ ଆକୃଷ୍ଟ କରିଥିଲା । ଏହାପରେ ବହୁ ବୌଦ୍ଧ ସମ୍ମିଳନୀରେ ଯୋଗଦାନ କରିବା ପରେ, ବୌଦ୍ଧଧର୍ମରେ ଦୀକ୍ଷିତ ହେବା ପାଇଁ ତାଙ୍କର ସଙ୍କଳ୍ପ କ୍ରମେ ଦୃଢ଼ରୁ ଦୃଢ଼ତର ହୋଇ ଉଠିଥିଲା । ୧୯୫୦ ମସିହା ଡିସେମ୍ବର ମାସରେ ସେ ବିଶ୍ୱ ବୌଦ୍ଧ ସମ୍ମିଳନୀରେ ଯୋଗଦାନ କରିଥିଲେ । ଏହା ପରବର୍ଷ ସେ ଭାରତୀୟ ବୌଦ୍ଧ ଜନସଂଘ ନାମରେ ଏକ ଅନୁଷ୍ଠାନ ମଧ୍ୟ ଗଠନ କରିଥିଲେ । ୧୯୫୪ ମସିହାରେ ରେଙ୍ଗୁନ୍‌ଠାରେ ଅନୁଷ୍ଠିତ ହୋଇଥିବା ବିଶ୍ୱହିନ୍ଦୁ ସମ୍ମିଳନୀରେ ସେ ଜଣେ ପ୍ରତିନିଧି ରୂପେ ଯୋଗଦାନ କରିଥିଲେ । ୧୯୫୬ ମସିହା ଅକ୍‌ଟୋବର ୧୪ ତାରିଖ ଦିନ, ନାଗପୁର ଠାରେ ଆୟୋଜିତ ଏକ ଐତିହାସିକ ଉତ୍ସବରେ ସେ ଆନୁଷ୍ଠାନିକ ଭାବରେ ବୌଦ୍ଧ-ଧର୍ମରେ ଦୀକ୍ଷିତ ହୋଇଥିଲେ । ସେହି ବର୍ଷ କାଠମାଣ୍ଡୁ ଠାରେ ବିଶ୍ୱହିନ୍ଦୁ ସମ୍ମିଳନୀର ଏକ ଅଧିବେଶନ କରିଥିଲେ । ଏହି

ଅଧିବେଶନରେ ଅମ୍ବେଦକର ମଧ୍ୟ ଯୋଗ ଦେଇଥିଲେ । କାଠମାଣ୍ଡୁ ବିଶ୍ୱହିନ୍ଦୁ ସମ୍ମିଳନୀରେ ଅମ୍ବେଦକରଙ୍କୁ 'ନବବୁଦ୍ଧ' ରୂପେ ଅଭିନନ୍ଦନ ଜ୍ଞାପନ କରା ଯାଇଥିଲା ।

ଅମ୍ବେଦକରଙ୍କ ପ୍ରେରଣାରେ ଯେଉଁ ଅସ୍ପୃଶ୍ୟମାନେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ, ସେମାନେ ନବ୍ୟ ବୌଦ୍ଧ ରୂପେ ପରିଚିତ । ନବ୍ୟ ବୌଦ୍ଧମାନଙ୍କ ପାଇଁ ସଂରକ୍ଷଣର କୌଣସି ବ୍ୟବସ୍ଥାର ପ୍ରୟୋଜନ ନାହିଁ ବୋଲି ଅମ୍ବେଦକର ବରାବର କହି ଆସିଥିଲେ । କାରଣ ସେମାନେ ଅନ୍ୟ କୌଣସି ଜାତି ବା ବର୍ଣ୍ଣର ଲୋକମାନଙ୍କ ସହିତ ସମାନ । ତେଣୁ ସେମାନଙ୍କ ପାଇଁ ସଂରକ୍ଷଣର ବ୍ୟବସ୍ଥା କାହିଁକି ? ମାତ୍ର ଇତିହାସର ପରିହାସରେ ନବ୍ୟବୌଦ୍ଧ ସଂପ୍ରଦାୟ ଆଜି ପୁଣି ଅନୁସୂଚିତ ଜାତିରୂପେ ପରିଗଣିତ ହୋଇ ସଂରକ୍ଷଣ ପାଇଁ ଦାବୀ କରୁ ଅଛନ୍ତି ।

ଅମ୍ବେଦକର ହିନ୍ଦୁଧର୍ମ ପରିହାର କରି ବୌଦ୍ଧଧର୍ମ ଗ୍ରହଣ କରିଥିଲେ, ଏକ ସାମାଜିକ ପ୍ରତିବାଦ ରୂପେ । କିନ୍ତୁ ବୁଦ୍ଧ ମଧ୍ୟ ହିନ୍ଦୁ ଆଧ୍ୟାତ୍ମିକ ପରମ୍ପରାରେ ବିଷ୍ଣୁଙ୍କର ଜଣେ ଅବତାର ରୂପେ ବିବେଚିତ ହୋଇ ଥିବାରୁ ଅମ୍ବେଦକର ଶେଷ ପର୍ଯ୍ୟନ୍ତ ଯେ ହିନ୍ଦୁ ରହିଥିଲେ, ତାହାକୁ ଅସ୍ୱୀକାର କରିହେବ ନାହିଁ । ବୌଦ୍ଧମାନେ ଅବଶ୍ୟ ହିନ୍ଦୁମାନଙ୍କଠାରୁ ସ୍ୱାତନ୍ତ୍ର୍ୟ ଦାବୀ କରି ଥାଆନ୍ତି । ମାତ୍ର ହିନ୍ଦୁଧର୍ମ ଓ ବୌଦ୍ଧଧର୍ମ ବିଭିନ୍ନ ସ୍ତରରେ ଏପରି ଏକାଠି ହୋଇ ଯାଇଛି ଯେ, ବୌଦ୍ଧଧର୍ମ ସହିତ ସମନ୍ୱିତ ହୋଇ ପଡ଼ିଅଛି । ଅମ୍ବେଦକରଙ୍କର ବୌଦ୍ଧଧର୍ମ ଗ୍ରହଣ ସନାତନୀ ହିନ୍ଦୁଧର୍ମର ଜାତିଭେଦ ପ୍ରଥା ବିରୁଦ୍ଧରେ ଥିଲା ଏକ ପ୍ରତିବାଦ ମାତ୍ର ।

---

# ଉପସଂହାର

ଅମ୍ବେଦକର ୧୯୫୨ ମସିହା ମାର୍ଚ୍ଚ ମାସରେ ପାର୍ଲିଆମେଣ୍ଟର କାଉନ୍‌ସିଲ ଅଫ୍ ଷ୍ଟେଟ୍‌ସ ବା ରାଜ୍ୟସଭାକୁ ନିର୍ବାଚିତ ହୋଇ ଆସିବା ବେଳକୁ ତାଙ୍କ ବୟସ ହୋଇଥିଲା ୬୧ । ସେତେବେଳକୁ ତାଙ୍କର ସ୍ୱାସ୍ଥ୍ୟ ହାନି ଘଟିବା ଆରମ୍ଭ ହୋଇଥିଲା । ତାଙ୍କର ବ୍ୟକ୍ତିତ୍ୱ ସେହିପରି ଅବାରିତ ଓ ଅବଦମିତ ଥିଲେ ହେଁ ତାଙ୍କ ଚେହେରା ଉପରେ ଅସୁସ୍ଥତା ଓ ବାର୍ଦ୍ଧକ୍ୟର ଛାପ ଅସ୍ପଷ୍ଟ ନଥିଲା । ସବୁଦିନେ ସେ ପ୍ରାୟ ରାଜ୍ୟସଭାକୁ ଆସୁ ନଥିଲେ । କୋଣସିଭ୍ କେବେ କେବେ ସେ ରାଜ୍ୟସଭାରେ ଉପସ୍ଥିତ ଥିଲେ, ବିତର୍କରେ ଅଂଶ ଗ୍ରହଣ କରୁଥିଲେ । ତାଙ୍କର କଣ୍ଠସ୍ୱରରେ ବାର୍ଦ୍ଧକ୍ୟର ଶୈଥିଲ୍ୟ ନଥିଲା । ସେ ଥିଲେ ଜଣେ ଉଚ୍ଚକୋଟୀର ବାଗ୍ମୀ ଓ ତାର୍କିକ । ସେ କୌଣସି ନିର୍ଦ୍ଦିଷ୍ଟ ବିରୋଧୀ ଦଳ ସହିତ ସାମିଲ ନଥିଲେ । ଜଣେ ସ୍ୱାଧୀନ ସଭ୍ୟ ରୂପେ ସେ ବିଭିନ୍ନ ବିତର୍କରେ ଅଂଶ ଗ୍ରହଣ କରୁଥିଲେ । ଅନେକ ସମୟରେ ସରକାରୀ ପକ୍ଷ ଅମ୍ବେଦକରଙ୍କ ଯୁକ୍ତିର ଯଥାର୍ଥ ଉତ୍ତର ଦେବାପାଇଁ ସମର୍ଥ ହୋଇପାରୁ ନ ଥିଲେ । ତାଙ୍କର ବିଦ୍‌ବତ୍ତା, ପାଣ୍ଡିତ୍ୟ ଓ ବ୍ୟକ୍ତିତ୍ୱ ପାଇଁ ଦଳମତ ନିର୍ବିଶେଷରେ ତାଙ୍କ ପ୍ରତି ସମସ୍ତଙ୍କର ଶ୍ରଦ୍ଧା ସମ୍ମାନ ରହିଥିଲା ।

ମନେପଡ଼ୁଛି, ୧୯୫୫ ବା ୧୯୫୬ ମସିହାରେ ରାଜ୍ୟସଭାରେ ରାଜ୍ୟ—ପୁନର୍ଗଠନ ବିଲ୍ ଆଲୋଚିତ ହେଉଥିବା ବେଳର ଏକ ଘଟଣା :- ସେତେବେଳକୁ ଅମ୍ବେଦକର ବୋଧହୁଏ ପକ୍ଷାଘାତ ରୋଗରେ ଆକ୍ରାନ୍ତ ହୋଇ ପଡ଼ିଥିଲେ । ତଥାପି, ଯେଉଁଦିନ ସେ ରାଜ୍ୟସଭାକୁ ଆସୁଥିଲେ, ରାଜ୍ୟସଭାର ନିରାପତ୍ତା ରକ୍ଷୀମାନଙ୍କ ଭିତରୁ ଦୁଇଜଣ ତାଙ୍କର ଦୁଇ ବାହା ଧରି ତାଙ୍କୁ ଚଲାଇ ଚଲାଇ ଆଣି ସବା ପଛ ଧାଡ଼ିରେ ବସାଇ ଦେଉଥିଲେ ।

ସେଦିନ ସେହିପରି ଭାବରେ ସେ ରାଜ୍ୟସଭାକୁ ଆସି, ସବା ପଛ ବେଞ୍ଚରେ ଗୋଟିଏ ଆସନରେ ବସିଲେ । ରାଜ୍ୟସଭାରେ ଅମ୍ବେଦକରଙ୍କୁ ବହୁଦିନ ପରେ ଦେଖି, ଉପସ୍ଥିତ ସଭ୍ୟମାନଙ୍କ ମଧ୍ୟରେ ଗୋଟାଏ ମୃଦୁ ଗୁଞ୍ଜରଣଧ୍ୱନି ଉଠିଲା । ସମସ୍ତଙ୍କର ଅପେକ୍ଷା, ଅମ୍ବେଦକର କେତେବେଳେ କହିବେ ।

ଉତ୍ତର-ପ୍ରଦେଶ ଆକାରରେ, ଅତି ବିଶାଳ ଥିବାରୁ ଏହାକୁ ଭାଗ ଭାଗ କରିବା ପାଇଁ ଅମ୍ବେଦକର ବରାବର ଦାବୀ କରି ଆସୁଥିଲେ । ସେଦିନ ତାଙ୍କ ଭାଷଣରେ ଉତ୍ତର ପ୍ରଦେଶର ବିଭାଜନ ଥିଲା, ମୁଖ୍ୟ ବିଷୟବସ୍ତୁ । ସେଇ ପ୍ରସଙ୍ଗରେ ହଠାତ୍ ସେ ଭାରତୀୟ ସମ୍ବିଧାନର ତୀବ୍ର ସମାଲୋଚନା ଆରମ୍ଭ କରିଥିଲେ ।

ଅମ୍ବେଦକର ସମ୍ବିଧାନର କଠୋର ସମାଲୋଚନା କରୁଥିବା ବେଳେ, କଂଗ୍ରେସ ବେଞ୍ଚରୁ କେହି ଜଣେ ସଭ୍ୟ ଟିପ୍ପଣୀ ଦେଇ......"ଆପଣ ସମ୍ବିଧାନର ନିର୍ମାତା ହୋଇ, ସମ୍ବିଧାନର ଏପରି ତୀବ୍ର ସମାଲୋଚନା କରୁଛନ୍ତି କିପରି ?"

ଅମ୍ବେଦକର ଉଚ୍ଚକଣ୍ଠରେ ଉତ୍ତର ଦେଲେ... "ମୁଁ ଗୋଟିଏ ଦେଉଳ ଗଢ଼ିଥିଲି ଦେବତା ମାନଙ୍କ ପାଇଁ । କିନ୍ତୁ ସେ ଦେଉଳ ଆଜି ଅସୁର, ରାକ୍ଷସମାନଙ୍କ ଦ୍ୱାରା କବଳିତ ହୋଇଛି । ମୁଁ ତେଣୁ ସେ ଦେଉଳକୁ ଆଜି ଭାଙ୍ଗି ଦେବାକୁ ଚାହେଁ ।"

ଅମ୍ବେଦକରଙ୍କ ଏହି ଉକ୍ତି, ସେତେବେଳେ ନିତାନ୍ତ ପ୍ରାସଙ୍ଗିକ ନଥିଲେ ହେଁ ତାଙ୍କ ଜୀବନର ସବୁ ତିକ୍ତତା ଯେପରି ଏଇ ଉକ୍ତି ମଧ୍ୟରେ ବିସ୍ଫୋରଣ କରି ଉଠିଥିଲା ।

ଭାଷଣ ଶେଷହେବା ପରେ, ଅମ୍ବେଦକର ଯେପରି ଆକସ୍ମିକ ଭାବରେ ଆସିଥିଲେ, ସେହିପରି ଆକସ୍ମିକ ଭାବରେ ରାଜ୍ୟସଭାରୁ ଉଠି ଚାଲିଗଲେ ।

ତାହାହିଁ ଥିଲା, ତାଙ୍କ ସହିତ ମୋର ଶେଷ ସାକ୍ଷାତ । ୧୯୫୬ ମସିହା ଡିସେମ୍ବର ୬ ତାରିଖ ଦିନ ଅମ୍ବେଦକର ଇହଲୀଳା ସମ୍ବରଣ କରିଥିଲେ ।

ମହାତ୍ମା ଗାନ୍ଧୀ ଓ କଂଗ୍ରେସ ସହିତ ତାଙ୍କର ବିଭିନ୍ନ ସମସ୍ୟା ସମ୍ପର୍କରେ ତୀବ୍ର ମତାନ୍ତର ଥିଲେ ହେଁ ଭାରତର ଜାତୀୟ ଇତିହାସରେ ସେ ଯେ ଜଣେ ବରେଣ୍ୟ ଜନନେତା ଥିଲେ, ଏହାକୁ କଦାପି ଅସ୍ୱୀକାର କରିହେବ ନାହିଁ । ଶତାବ୍ଦୀ ପରେ ଶତାବ୍ଦୀ ଧରି, ଯେଉଁମାନେ ଅସ୍ପୃଶ୍ୟ ରୂପେ ପରିଗଣିତ ହୋଇ ଦଳିତ ଓ ନିଷ୍ପେଷିତ ଅବସ୍ଥାରେ ପଡ଼ି ରହିଥିଲେ,

ଅମ୍ବେଦକରଙ୍କ ସଂଗ୍ରାମ ଓ ସାଧନା ଫଳରେ ସେମାନେ ଆଜି ସ୍ୱାଧୀନତା ଭାରତରେ ଆତ୍ମମର୍ଯ୍ୟାଦାରେ ସୁପ୍ରତିଷ୍ଠିତ ହୋଇ ପାରିଛନ୍ତି । ଭାରତ ପ୍ରତି ଏହାହିଁ ତାଙ୍କର ଶ୍ରେଷ୍ଠ ଓ ମହତ୍ତ୍ୱପୂର୍ଣ୍ଣ ଅବଦାନ ।